# ଜୀବନଧର୍ମୀ ସାହିତ୍ୟ ଭୂମିକା

ରଜନୀ କାଂତ ଦାସ

# ॥ ଜୀବନଧର୍ମୀ ସାହିତ୍ୟର ଭୂମିକା ॥



ଲକ୍ଷ୍ମୀକାଂତ ଦାସ



(ରାଜ୍ୟ ସାଂସ୍କୃତିକ ବ୍ୟାପାର
ବିଭାଗ ସାହାଯ୍ୟରେ ପ୍ରକାଶିତ)

# ॥ ଜୀବନଧର୍ମୀ ସାହିତ୍ୟର ଭୂମିକା ॥

ପ୍ରଥମ ସଂସ୍କରଣ
ମଇ - ୧୯୭୫

ପ୍ରଚ୍ଛଦ ଚିତ୍ର
ଶ୍ରୀ ଅସୀମ ବସୁ

ମୁଦ୍ରଣ ଓ ପ୍ରକାଶନ :
ରଜନୀକାନ୍ତ ଦାସ
ରାଇଟର୍ସ ଓ୍ୱାର୍କସପ୍
ରାଉରକେଲା-୭୬୯ ୦୧୨

*Title* : JIBAN DHARMI SAHITYAR BHUMIKA
*Author* : RAJANIKANTA DAS
*Publishers* : R. K DAS-
WRITERS' WORKSHOP
ROURKELA-769 012
ORISSA/INDIA
Ist. Edition May, 1975

PRICE : DELUX Rs. 7-00
POPULAR Rs. 5-00

Published under the kind patronage of
**Cultural Affairs Department,
Govt. of Orissa.**



ଏଇ ବହିରେ ପ୍ରକାଶିତ ପ୍ରବଂଧ ଗୁଡ଼ିକ ରାଉରକେଲା କଲ୍‌ଚରାଲ ଏକାଡେମୀର ମୁଖପତ୍ର ଏବଂ ନିଜ ଦ୍ୱାରା ସଂପାଦିତ 'ନବପତ୍ର' ସାହିତ୍ୟ ପତ୍ରିକାର ସଂପାଦକୀୟ ସ୍ତଂଭରେ ବିଭିନ୍ନ ଆଲୋଚନା ପ୍ରସଂଗରେ ୧୯୬୫ରୁ ୧୯୭୫ ମଧ୍ୟରେ ପ୍ରକାଶିତ ହୋଇଥିଲା ।

ରାଜ୍ୟ ସାଂସ୍କୃତିକ ବିଭାଗର ସାହାଯ୍ୟ କ୍ରମେ ଏହା ପୁସ୍ତକ ଆକାରରେ ପ୍ରକାଶିତ ହୋଇ ଥିବାରୁ ଉକ୍ତ ବିଭାଗର ସଦସ୍ୟ କର୍ମକର୍ତ୍ତା ମାନଂକୁ କୃତଜ୍ଞତା ଅର୍ପଣ କରୁଛି ।

— **ଲେଖକ**

ମଇ, ୧୯୭୫

ଉଦିତନଗର

ରାଉରକେଲା-୭୬୯ ୦୧୨



# ॥ ବିଷୟ ସୂଚୀ ॥





# ପ୍ରାକ କଥନୀକା

ସାହିତ୍ୟ ବିଶେଷତଃ ଓଡ଼ିଆ ସାହିତ୍ୟ ଏବେବି ଏକ ସୌଖୀନ କଳା । ମାଟି କାନ୍ଥରେ ଖିଆଲି ହାତର ଝୋଟି ଚିତାପରି କେତେ ରଂଗରେ ଉତ୍କୃଷ୍ଟ— ପୁଣି ବର୍ଷିଲ ମାଟି ଗୋବର ଲୁଂଚ ତଳେ ମିଶି ହଜିଯାଉଛି । ପଶା ତାଆସ ଆଡ୍ଡା ପରି ଚିତ୍ତ ବିନୋଦନ ବି ହେଉଛି । ଘର ସଂସାର ତ୍ୟାଗୀ ଚିତା ଚଇତନ ବୈରାଗୀ ସାଧନ ମଧ୍ୟ ହେଉଛି । ଏବେବି ଅନେକ ମନେକରଂତି, ବନ୍ୟା, ମରୁଡ଼ି, ପ୍ରୀତି ପାର୍ବଣ, ଗଣତଂତ୍ର ଫାଶୀବାଦ, ସମସ୍ୟାଅସମସ୍ୟାରେ ସାହିତ୍ୟର କିଛି କରଣୀ ନାହିଁ । ସାହିତ୍ୟ ଆଲୁଅକୁ ଯେତିକି ସୁଖ ମଣିବ— ଅଂଧାରକୁ ମଧ୍ୟ ସେତିକି ଲୋଡ଼ିବ । ସାହିତ୍ୟ ଏକ ଅନଂତ ଯୌବନା ଚପଳ ଛଂଦା ନାରୀ— ଏବଂ କବି, ଲେଖକ ହେଲେ ତାର ବନ୍ଧୂଳି ଅଧରରୁ ଅମୃତ ମଧୁ ଆସ୍ୱାଦନ କରି ଚିରଂଜୀବୀ ବୈକୁଂଠପ୍ରାପ୍ତି ଆଶାୟୀ ବିଦଗ୍ଧ କାଂଗାଳ ଭ୍ରମର କୁଳ ।

ଅଂଟି ପୂର୍ବ ନୁହେ, ହକ୍ କଥା । ସାମଗ୍ରିକ ସମାଜ ଜୀବନର କଲ୍ୟାଣ ପାଇଁ (ଅକଲ୍ୟାଣ ନହେଲେ ମଧ୍ୟ) ଯେଉଁ ଆଲେଖ୍ୟ ଉଦ୍ଦିଷ୍ଟ ନୁହେଁ, ମଣିଷର ଶିକ୍ଷା, ସଂସ୍କୃତି, ଜୀବିକା, ସାମାଜିକ ସଂଘର୍ଷ ଏବଂ ବ୍ୟକ୍ତି ଓ ସମାଜ ଚେତନାର ସମୋନ୍ନତି ନିମନ୍ତେ ବ୍ୟଂଜନା ଯେଉଁଥିରେ ନାହିଁ, ଯୁଗ ଯନ୍ତ୍ରଣାର ଅନୁଭବନା ଯେଉଁ କଳା ଗୁରୁତ୍ୱରେ ପ୍ରସ୍ଫୁଟିତ ନୁହେଁ, ତାକୁ ସାହିତ୍ୟ ବା ସାହିତ୍ୟ କର୍ମ ବୋଲି ସ୍ୱୀକାର କରିବାର ବଦାନ୍ୟତା ଆମର ନାହିଁ । ଅନନ୍ତ କାଳରୁ ସାହିତ୍ୟ ସମାଜର ମଂଗ ସଲଖିବା କାମରେ ନିୟୋଜିତ ହୋଇ ଆସିଛି । ମଣିଷ ଜୀବନର ସୁଖ ଦୁଃଖରେ ଅକପଟ ସଖ୍ୟତା ଦେଇଆସିଛି । ଅଂଧମୁହାଣିରେ ସାହିତ୍ୟ ଦୀପ୍ତିର ଜାଳିଛି । ସଂସାର ଗୋଷ୍ଠୀକର ନିଃସ୍ୱ ନିପୀଡ଼ିତ ମଣିଷ ଅସହାୟ-ଭାବେ ବାଟ ଅଂଡାଳୁ ଥିବାବେଳେ, ସାହିତ୍ୟ ପରି ଏକ ନିସ୍ୱାର୍ଥୀ ହତିଆରକୁ ଯାହା ଦୁଆଂଶ ବିକାଶରେ ଅପଚୟ କରିବାର ପ୍ରୟାସକୁ ଆମେ ବିରୋଧ କରୁ । ସୁଲଭ ହାତପାଆଂତା ଏବଂ ରଂଗୋଜ୍ଜ୍ୱଳ ହେଲବୋଲି ଜୀବନ ରକ୍ଷାକାରୀ ଔଷଧକୁ ପାଦରେ ଅଳତାପରି ବୋଳିବା ଏକ ସାମାଜିକ ଅପରାଧ । ଯେତେ କ୍ଷୀଣ ହେଲେବି ଆମେ ଏହା ବିରୁଦ୍ଧରେ ଅବଶ୍ୟ ସ୍ୱର ଉଠେଇବୁ ।

କଲ୍‌ଚରାଲ ଏକାଡ଼େମୀର ପ୍ରତିଷ୍ଠା ସେଇଥିପାଇଁ । ସେଇ ସକାଶେ ବହୁ ପ୍ରତିବଂଧକ ସତ୍ତ୍ୱେ 'ନବପତ୍ର'ର ପ୍ରକାଶନ । ଯେଉଁମାନେ ପଢ଼ିଛଂତି, ଆମର ବିଶ୍ୱାସ, ''ନବପତ୍ର''ର ମୁଖଶାଳା ସ୍ତଂଭର ଲେଖା ଗୁଡ଼ିକ ନିଛକ ବିଧି ରକ୍ଷାପାଇଁ ସଂପାଦକୀୟ ଟିପ୍‌ପଣୀ ନୁହେଁ । ଯୁଗ ଯନ୍ତ୍ରଣାର ଅନୁଚିଂତା ଓଡ଼ିଆ ସାହିତ୍ୟର ପାଗଯୋଗ ସୁଆଦ ବାରିବା ପାଇଁ ପ୍ରାୟ ସବୁ ପ୍ରବଂଧ ଗୁଡ଼ିକରେ ପ୍ରଚେଷ୍ଟା କରାଯାଇଛି । ଏହାର ସପକ୍ଷ ବିପକ୍ଷରେ ବହୁ ମତାମତ ଉଠିଛି ଏବଂ ବିଭିନ୍ନ ସ୍ତରରେ ଆଲୋଚନା ସମାଲୋଚନା ମଧ୍ୟ ହୋଇଯାଇଛି । ଭିନ୍ନ ଭିନ୍ନ ଅବକାଶରେ ପ୍ରକାଶିତ 'ନବପତ୍ର'ର ସେହି ଅଗ୍ର ଲେଖା ଗୁଡ଼ିକ ଏବେ ଏକତ୍ରିତ ହୋଇ ପୁସ୍ତକାକାରରେ ପ୍ରକାଶିତ ହେଉଥିବାରୁ ଆମେ ଆନନ୍ଦିତ । କାରଣ 'ଜୀବନଧର୍ମୀ ସାହିତ୍ୟର ଭୂମିକା' ସଂପାଦକଂକ ନିଜସ୍ୱ ରଚନା ହେଲେ ମଧ୍ୟ, କଲ୍‌ଚରାଲ ଏକାଡ଼େମୀ ପରିବାରର ସେଥିରେ ଆତ୍ମିକ ସଂଯୋଗ ଓ ସମର୍ଥନ ରହିଛି ।

ଆମର ବିଶ୍ୱାସ, କେବଳ ବିଦଗ୍ଧ ସାହିତ୍ୟ ରସିକ ନୁହେଁ, ସାଧାରଣ ପାଠକମାନେ ମଧ୍ୟ ମାତ୍ର ଗତ ଦଶକର ଓଡ଼ିଆ ସାହିତ୍ୟ ଭୂଇଁର ପାଗଯୋଗ ସଂପର୍କରେ ଏକ ଭିନ୍ନ ସ୍ୱାଦର ଖୋରାକ ଏଥିରୁ ପାଇବେ ।

• **କଲ୍‌ଚରାଲ ଏକାଡ଼େମୀ**



## ॥ ଆଧୁନିକ କବିତା ॥

ଆଜିକାର ଓଡ଼ିଆ ପତ୍ରପତ୍ରିକାରେ ଯେତେ ଲେଖା ପ୍ରକାଶ ପାଉଛି, ସେ ଭିତରେ କବିତାହିଁ ସଂଖ୍ୟାଧିକ। ଅଧୁନାତନ ସାହିତ୍ୟ ରଚନାରେ କବିତାକୁ ଏକ ସହଜ ଶିଳ୍ପ-କର୍ମ ଭାବେ ଧରାଯାଏ। ଗଳ୍ପ ଓ ପ୍ରବଂଧ ଲେଖାରେ ଯେଉଁ ଧରଣର ମନନଶୀଳତା ଏବଂ ଅଧ୍ୟବସାୟ ପ୍ରୟୋଜନ, କବିତା ଲେଖିଲାବେଳେ ତାହା ଆବଶ୍ୟକ ହୁଏନାହିଁ ବୋଲି ଅନେକଂକର ଧାରଣା।

ସଙ୍ଗୀତ ଗାୟକମାନେ ଅନ୍ୟ ରଚିତ ଗୀତ ଗାଉଗାଉ ନିଜେ ମଧ୍ୟ ସଙ୍ଗୀତ ଲେଖି ପକାଂତି। ଛାଂଦ ଓ ଗୀତର ଗାୟକମାନେ ପରବର୍ତ୍ତୀ ଜୀବନରେ ଗୀତ ଲେଖିବା ଆରଂଭ କରଂତି। ସଙ୍ଗୀତ, ଗୀତ ଏବଂ କବିତାର ଯେଉଁ ସୂକ୍ଷ୍ମ-ଆବେଦନ ପ୍ରାଣକୁ ସ୍ପର୍ଶ କରେ, ତାର ଅଭିବ୍ୟକ୍ତି ଏତେ କୋମଳ ଯେ; ତାହା ସ୍ରଷ୍ଟା-ପ୍ରାଣକୁ ମଧ୍ୟ ଉଦ୍ଭାସିତ କରି ସେଥିରୁ ସଙ୍ଗୀତ ଝରାଇ ଦିଏ।

କିଂତୁ ଗଳ୍ପ ବା ପ୍ରବଂଧର ଲେଖକ ପକ୍ଷେ ତାହା ସଂଭବ ହୁଏନା। ଭାବ-ରାଜ୍ୟରେ ବା ବାସ୍ତବ ଜଗତରେ କୌଣସି ଏକ ସୂକ୍ଷ୍ମ ଅଭିବ୍ୟଂଜନାକୁ ଭିତ୍ତି କରି କବିତା ଲେଖାଯାଏ। ସେଥିପାଇଁ ଅବଶ୍ୟ ଆବଶ୍ୟକୀୟ ଶିଳ୍ପ-କର୍ମର ସାହାଯ୍ୟ ନିଆଯାଏ। କିଂତୁ ସେ କଳା-କର୍ମ ଗଳ୍ପ ରଚନା ପରି କଠିନ ନୁହେଁ। ଭାବ-ରାଜ୍ୟ ବା ବାସ୍ତବ ଜଗତରେ ଯେ କୌଣସି ସୂକ୍ଷ୍ମ ଅଭିବ୍ୟଂଜନାକୁ କେଂଦ୍ର କରି ଗଳ୍ପ ମଧ୍ୟ ଲେଖାଯାଏ; କିଂତୁ ସେଥିରେ ବଡ଼ କଥା ହେଲା ଆଗ ଗୋଟାଏ

ପ୍ଲଟ ତିଆରି କରିବା । ପ୍ଲଟ ବା କଥାବସ୍ତୁ ପ୍ରସ୍ତୁତ କଲାବେଳେ ଶିଳ୍ପ-କର୍ମର ବହୁ ପାରଦର୍ଶିତା ଦେଖାଇବାକୁ ପଡ଼େ । ମୂର୍ତ୍ତିକାର ମୂର୍ତ୍ତି ତିଆରି କଲାଭଳି ଗାଳ୍ପିକପକ୍ଷେ ଗଳ୍ପର ପ୍ଲଟ ତିଆରି କରିବା କଠିନ ବ୍ୟାପାର ।

ମୂର୍ତ୍ତିକାର ଛବି ପାଇଁ ପ୍ରଥମେ ଗୋଟାଏ ଗ୍ରୁଂଚ ତିଆରି କରେ । ତା' ଉପରେ କାଦୁଅ ଲେପି ଗଢ଼ଣଟି ପୂର୍ଣାଂଗ ସୁଂଦର ହେଲପରେ, ସେଥିରେ ରଂଗ ବୋଳ ମୂର୍ତ୍ତିର ପ୍ରାଣ-ପ୍ରତିଷ୍ଠା କରାଏ । ଖାଲି କାଦୁଅ ଲେପି ରଂଗ ବୋଳି ଦେଲେ ତାକୁ ମୂର୍ତ୍ତି କୁହାଯିବ ନାଇଁ । ମୂର୍ତ୍ତିର ଗୋଡ଼, ହାତ, କାନ, ନାକ ଓ ସବୁ ଅଂଗ ପ୍ରତ୍ୟଂଗ ଶାସ୍ତ୍ରୀୟ ନିୟମରେ ମାପଚୂପ କରି ତିଆରି କରିବାକୁ ପଡ଼ିବ । ରଂଗ ଦେଲାବେଳେ ମଧ୍ୟ ଗଭୀର ରୁଚିବୋଧ ଏବଂ ବିବେଚନା ଦରକାର । ସବୁ ପ୍ରକାର ଶିଳ୍ପ-କର୍ମରେ ପୂର୍ଣାଂଗ ହେବା ପରେ ଯାଇ ମୃଣ୍ମୟ ମୂର୍ତ୍ତିରେ ପ୍ରାଣ-ପ୍ରତିଷ୍ଠା ସଂଭବପର ହେବ ବୋଲି ପୂଜକ ମଂତ୍ର ଉଚ୍ଚାରଣ କରନ୍ତି ।

ଗଳ୍ପ ଲେଖକର ସମସ୍ୟା ଠିକ୍ ସେଇପରି । ପ୍ରବଂଧ ଲେଖକର ଦାୟିତ୍ୱ ମଧ୍ୟ ଗାଳ୍ପିକଠାରୁ କିଛି ଊଣା ନୁହେଁ । ଅବଶ୍ୟ ପ୍ରବଂଧ ଲେଖକ ପାଖରେ ଦିନେ ଶିଳ୍ପ କର୍ମର କିଛି ଗୁରୁତ୍ୱନଥିଲା । କିଂତୁ ସେତେବେଳେ ବି ପ୍ରବଂଧ ଲେଖକ ପାଇଁ ଲୋଡ଼ାହେଉଥିଲା ଗଭୀର ଅଧ୍ୟୟନ ଏବଂ ଅନୁଶୀଳନର ପାଣ୍ଡିତ୍ୟ । ଆଜିକାଲି ପ୍ରବଂଧ ଭିତରେ ବି ଶିଳ୍ପ-କର୍ମ ଭର୍ତ୍ତିକରି ତାକୁ ଗଳ୍ପପରି ସରସ ଏବଂ ହୃଦୟଗ୍ରାହୀ କରାଯାଉଛି ।

ଏସବୁ ଦେଖାଇବାର କାରଣ ହେଉଛି, ଶୈଳୀ ପ୍ରକରଣ ଜରିଆରେ ଆଧୁନିକ ଗଳ୍ପ ଓ ପ୍ରବଂଧ ଉଭୟେ ସଫଳତାର ଯେଉଁ ସୀମା ଭୂମି ଉପରେ ଦୃଢ଼ଭାବେ ଠିଆହୋଇ ରହିଲେଣି, କବିତାପକ୍ଷେ ତାହା ବହୁ କ୍ଷେତ୍ରରେ ସାଧାରଣଭାବେ ସଂଭବପର ହୋଇନାଇଁ । ଅଥଚ ଦେଖିବାକୁଗଲେ କବିତା ଗଳ୍ପ ଅପେକ୍ଷା ପୁରୁଣା ଏବଂ ଏହା ପଛରେ ହଜାର ହଜାର ବର୍ଷବ୍ୟାପୀ ନିରବଚ୍ଛିନ୍ନ ସାଧନାର ଐତିହ୍ୟ ଲାଗି ରହିଛି । ପୃଥିବୀର କ୍ରମୋନ୍ନତିଶୀଳ ଭାବ ପ୍ରବାହ ଭିତରେ ହଜାର ହଜାର ବର୍ଷର ଅଭିଜ୍ଞତାର ସ୍ତୂପ, ଏବଂ ଆଧୁନିକ ବୈଜ୍ଞାନିକ ବିଶ୍ୱର ସମନ୍ୱିତ ମାନସ-ଚେତନା ଭିତରେ ଆଧୁନିକ କବିତା ଶୈଳୀରେ ଗୋଟିଏ ସ୍ଥିର ଅବୟବ ସୃଷ୍ଟି ହୋଇପାରୁ ନଥିବା ପରିତାପର ବିଷୟ ନୁହେଁକି ?

କେବଳ ଓଡ଼ିଆ ସାହିତ୍ୟ ବିଷୟରେ ଏକଥା କୁହାଯାଉ ନାଇଁ, କବିତା ସଂପର୍କରେ ସବୁ ଭାରତୀୟ ଭାଷାର ସମସ୍ୟା ଏକାଭଳି । କେତେକଙ୍କ

ମଣ୍ଡଳରେ ଅଧୁନାତନ ଜୀବନର ଜଟିଳତମ ଅନୁଭୂତିକୁ ନୂତନ ଚିତ୍ରକଳ୍ପ ଦ୍ୱାରା ବ୍ୟକ୍ତ କଲାବେଳେ କବିତା ଦୁର୍ବୋଧ ହୋଇ ଯାଉଛି । ହୁଏତ ଅବସ୍ଥାଟା ଠିକ ସେଇଆ ବି ନୁହେଁ । ସମାଜର ଜଟିଳତମ ଅବସ୍ଥା ବୋଇଲେ ଇଉକ୍ଲିଡ୍‌ଙ୍କ ଜ୍ୟାମିତିବହିର କ୍ଷେତ୍ରତତ୍ତ୍ୱ ନୁହେଁ ଯେ; ତାକୁ ବୁଝାଇବା ଲାଗି କେତେ ଗୁଡ଼ିଏ ଫର୍ମୁଲା ଦରକାର ପଡ଼ିବ । ଜୀବନର ସକଳ ଅଭିବ୍ୟଂଜନାକୁ ଯିଏ ଭଲଭାବେ ବୁଝି ବୁଝାଇ ପାରେ— ସିଏ ହେଉଛି କବି । ଜୀବନକୁ ଭଲଭାବେ ବୁଝିନପାରିଛି ଯିଏ, ସେ କି କବିତା ଲେଖିବ ?

ଯିଏ ଯେଉଁ କଥା ବୁଝି ନପାରେ, ସେ ତାହା ବ୍ୟକ୍ତ କରିବାକୁ ଗଲା-ବେଳେ, ତା'ପାଖରେ ଜଟିଳତା ସୃଷ୍ଟି ହୁଏ । ଆଧୁନିକ କାଳର ବହୁ ତରୁଣ କବି ଏବଂ ସାଧକଙ୍କ ପାଖରେ ସମସ୍ୟାଟା ହୁଏତ ସେଇଆ । ସେମାନେ ଯେଉଁ ସ୍ତରରେ ଆସି ପହଂଚିଛଂତି, ସେ ସ୍ତରରେ ନିଜେ ଯାହା ଅନୁଭବ ବା ଉପଭୋଗ କରି ପାରୁ ନାହାଂନ୍ତି, ତାହା ଦୂରରେ ବା ନିକଟରେ ଅନ୍ୟମାନେ ଉପଭୋଗ କରୁଥିବା ଆଖିରେ ଦେଖୁଛଂନ୍ତି କିଂବା କାନରେ ଶୁଣୁଛଂନ୍ତି । ପୃଥିବୀର ଗୋଟିଏ କୋଣରେ ଆଜି ଯାହା ଘଟି ଯାଉଛି, କାଲି ତାହା ସାହିତ୍ୟ, ଚଳଚିତ୍ର, ରେଡ଼ିଓ ଏବଂ ଟେଲିଭିଜନ ମାଧ୍ୟମରେ ଅନ୍ୟ କୋଣରେ ପ୍ରସାରିତ ହୋଇ ଯାଉଛି । ତେଣୁ ଭାବ ଜଗତରେ ନିତ୍ୟ ନୂତନତାର ପ୍ରୟାସାଭିଳାଷୀ କବିର ଅନୁଭୂତିରେ ଯାହା ନାହିଁ, ତାକୁ ସେ ଅଭିଭୂତି ବଳରେ ହୃଦୟଙ୍ଗମ କରି କବିତା ଲେଖିବାକୁ ଗଲାବେଳେ ତାର କଳ୍ପନା-ସର୍ବସ୍ୱ ଚିତ୍ରକଳ୍ପ ମଧ୍ୟରେ ବାସ୍ତବତାର ନିଖୁଣଚିତ୍ର ଫୁଟି ଉଠିବା ଫୁଟି ପାରୁନାହିଁ । ଅନୁଭୂତି ଏବଂ ଅଭିଭୂତି ମଧ୍ୟରେ ଥିବା ଲକ୍ଷଣାଗତ ପାର୍ଥକ୍ୟ ହିଁ ଆଧୁନିକ କବିତା ଭିତରେ ଦେଖା ଦେଇଥିବା ଭାବଗତ ଜଟିଳତାର ଏକ ପ୍ରଧାନ କାରଣ । ଏହାକୁ ଅନୁଭୂତି ସିଦ୍ଧ ବସ୍ତୁଜ୍ଞାନ ବ୍ୟତୀତ ଅନ୍ୟ କୌଣସି ଉପାୟରେ ଦୂର କରାଯାଇ ପାରେନା ।

ଅବଶ୍ୟ ଏଇ ଭାବଗତ ଅସାମଂଜସ୍ୟ ଏବଂ ଜଟିଳତା ତଥା ଲକ୍ଷଣା ଅପଗତି ଭିତରେ ଓଡ଼ିଆ କବିତାର ଅବସ୍ଥା ଯେ ସବୁଠାରୁ ନିରାଶାଜନକ, ଏକଥା କେହି କହୁନାହିଁ । କିଂତୁ ଯେକୌଣସି ସାହିତ୍ୟ ହେଉନା କାହିଁକି, ଯେଉଁ କବିତା ପଢିବା ଓ ବୁଝିବା ପାଇଁ ପାଠକକୁ ଲେଖକ ପାଖରେ ଆଂଠୁ ମାଡ଼ି ବସି ରହିବାକୁ ପଡ଼ିବ, ସେ କବିତାରୁ ସାଧାରଣ ପାଠକ କିଭଳି ରସ ଉପଭୋଗ କରି ପାରିବେ ?

●



## ॥ ପ୍ରତୀକବାଦ ॥

ଗତାନୁଗତିକ ଜୀବନର ନୂଆ ବ୍ୟାଖ୍ୟାକାର ହେବା ପାଇଁ କବି ସଂସାରରେ ଜନ୍ମ ହୋଇଥାଏ । ମଇଳା କାଚରେ ସୂର୍ଯ୍ୟ କିରଣ ପଡ଼ିଲେ ସେଥିରୁ ଯେପରି କିଛି ରଂଗ ବାହାରେ ନାହିଁ, ଗତାନୁଗତିକ ଜୀବନର ସ୍ୱାଦ ସାଧାରଣ ମଣିଷଂକ ଲାଗି ସେହିପରି ବେଳେବେଳେ ଅବସାଦମୟ ଏବଂ ଅରୁଚିକର । କବି ସେଇ ସାଧାରଣ ମଣିଷଂକ ଭିତରେ ଜଣେ ଅସାଧାରଣ ଜୀବ, ଯିଏ ଜୀବନ ଭିତରେ ନୂଆ ଇଂଗିତ ଏବଂ ନୂଆ ପ୍ରତୀକ ବାହାର କରି ସାଧାରଣଂକ ଉପଭୋଗ ଲାଗି ପ୍ରେରଣା ଯୋଗାଇ ଥାଏ ।

ପୃଥିବୀ ପୃଷ୍ଠରେ ପ୍ରତି ଫଗୁଣ ମାସରେ ଥରେ ବସଂତ ଆସିଲା ଭଳି ସମାଜ ଭିତରେ ପ୍ରତି ମାସାଂତ ସଂକ୍ରାନ୍ତି ବେଳକୁ ବିପ୍ଳବ ଆସିବା ସଂଭବପର ନୁହେଁ । ମହା ବିଷୁବ ସଂକ୍ରାଂତି, ଖ୍ରୀଷ୍ଟମାସ, ରମଜାନ, ଦୁନିଆଁ କିଂବା ଜଗନ୍ନାଥଂକ ନବ କଳେବର ତିଥିରେ କ୍ୟାଲେଂଡ଼ର ହିସାବ ବା ପଂଜିକା ଗଣନା ଅନୁଯାୟୀ ବର୍ଷ ଓ କାଳ ବଦଳି ଯାଇପାରେ, କିଂତୁ ତା'ଦ୍ୱାରା ସମାଜର କିଛି ପରିବର୍ତ୍ତନ ହୁଏ ନାହିଁ । ସମାଜର ପରିବର୍ତ୍ତନ ଲାଗି କେତେ ଗୁଡ଼ିଏ କାର୍ଯ୍ୟ କାରଣର ଯୋଗାଯୋଗ ଆବଶ୍ୟକ । କାର୍ଯ୍ୟ କାରଣର ଯୋଗାଯୋଗ ନ ଘଟିଲେ; କେବଳ ତିଥି, ବାର, ବର୍ଷ, ମାସ ଶେଷରେ ଜ୍ୟୋତିଷ ଗଣନା ଅନୁସାରେ ସମାଜ ବଦଳିଯିବା ସଂଭବପର ନୁହେଁ । ସେଇହେତୁ ସମାଜର ଗତାନୁଗତିକ ସ୍ଥିତାବସ୍ଥାକୁ ବହୁ ବର୍ଷ ଧରି ମାନି ନେବାକୁ ପଡ଼ିଥାଏ ।

ଗତାନୁଗତିକ ସମାଜର ଗଡ୍ଡାଳିକା ପ୍ରବାହ ମଧ୍ୟରେ ମଣିଷର ଅନୁଭୂତି କେତେବେଳେ ତିକ୍ତ, ବିସ୍ୱାଦ ଏବଂ ଦୁର୍ବିସହ,— ଏକଥା ତ ସମସ୍ତେ ଜାଣନ୍ତି । କିଂତୁ ଏହାବୋଲି ସଂସାରରେ ଖୁବ କମ ଲୋକ ଆତ୍ମ ହତ୍ୟା କରନ୍ତି । ଆତ୍ମ ହତ୍ୟା ଦ୍ୱାରା ସମାଜ ବଦଳାଇବାର ସମ୍ଭାବନା ନଥାଏ । ସମାଜ ଭିତରେ ବଂଚି ରହିବା ଲୋକଂକ ଦ୍ୱାରା କେବେ ନା କେବେ ସମାଜ ବଦଳି ଯାଏ । ମଣିଷ ଯେତେବେଳେ ଗତାନୁଗତିକ ଅବସ୍ଥାକୁ ଦୃଢ଼ଭାବେ ମୁକାବିଲା କରି ସମାଜର ଜୀବଂତ ପ୍ରାଣୀ ଭଳି ବଂଚି ରହିବାକୁ ଚାହେଁ, ସେତିକିବେଳେ ସମାଜରେ ବିପ୍ଳବ ଆସେ ଏବଂ ସମାଜ ବଦଳିବାକୁ ବାଧ୍ୟ ହୁଏ ।

ସମାଜ ଭିତରେ ସେଇ ଅବସ୍ଥା ସୃଷ୍ଟି କରିବାଲାଗି ଆବହମାନ କାଳରୁ କବି, ଲେଖକ ମାନେ ହିଁ ସୂତ୍ରଧରରୂପେ କାର୍ଯ୍ୟ କରି ଆସିଛନ୍ତି । ଗତାନୁ-ଗତିକ ସମାଜରେ ନିଜେ ଉତ୍ପୀଡ଼ିତ ହୋଇ କବି ଯେତେବେଳେ ସେଥିରୁ ଆଉ କିଛି ନୂଆ ଇଂଗିତ ବାହାର କରିବାକୁ ଚାହେଁ, ସେତିକିବେଳେ ସେ ଖୋଜେ ପ୍ରତୀକ । କିଂତୁ ସେ ପ୍ରତୀକ ଇଂଦ୍ରଧନୁ ଭଳିଆ କେବଳ ମନ ଭୁଲାଣିଆ ଫୁଲ ଫାନୁସ ନୁହେଁ । ପୂର୍ବ କାଳର "ଆଇଭରି ଟାୱାର ପୋଏଟ୍ସ"ଙ୍କ ଭଳି ନିଜର ସ୍ଥିତାବସ୍ଥା ଭିତରେ ମୋହାଚ୍ଛନ୍ନ ନରହି ଏବର କବି ଯଦି ସମାଜ ଭିତରେ ଜୀବନର ନୂଆ ଇଂଗିତ ବାହାର କରି ସମାଜର ସ୍ଥିତାବସ୍ଥାକୁ ଭାଂଗିଦେବାପାଇଁ ମନୋରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିନପାରେ, ତାହାହେଲେ ଆଜିକାର ଆବଶ୍ୟକତା-ନିପୁଣ ଯୁଗରେ ସେଭଳି କବିତାର କୌଣସି ଆଦର ରହିବ ନାହିଁ ।

ଆଜିକାର ସମାଜକୁ, ଆବଶ୍ୟକତା-ନିପୁଣ କହିବାର ଯଥାର୍ଥତା ହେଲା ପୃଥିବୀବ୍ୟାପୀ ବୈଜ୍ଞାନିକ ପ୍ରଗତି ଫଳରେ ସୃଷ୍ଟି-ସଂପଦର ସବୁ ଗୁଡ଼ିକ ଚଳମାଣ ଏବଂ ଜଡ଼ ପଦାର୍ଥର ମୂଲ୍ୟାୟନ ହେଲାଣି । ସେହି ଦୃଷ୍ଟିରୁ ବିଜ୍ଞାନ ଆଜିକାର ସମାଜର ସ୍ଥିତାବସ୍ଥାକୁ ବହୁ କ୍ଷେତ୍ରରେ ଆହ୍ୱାନ ଦେଇ ସାରିଛି । ଆଗରୁ ଯାହାକୁ ଗତାନୁଗତିକ ସମାଜ କୁହା ଯାଉଥିଲା, ଆଜିକାର ବିଜ୍ଞାନ ଯୁଗରେ ସେହି ପୁରୁଣା ସମାଜ ସେଇପରି ଗତାନୁଗତିକତାର ସାଂକୁ ପିଂଧି ଅଂଧାର କୋଣରେ ଆଉ ଆବଦ୍ଧ ରହି ପାରୁନାହିଁ ।

ବୈଜ୍ଞାନିକ ପ୍ରଗତିର ସୁଯୋଗ ଆଜି ପୃଥିବୀ ପୃଷ୍ଠରେ ଉପେକ୍ଷିତ ଧୂଳି-କଣା ଏବଂ ମାଟି ତଳେ ପୋତା ହୋଇ ରହିଥିବା ପ୍ରତ୍ୟେକ ଜଡ଼ ବସ୍ତୁକୁ ମଧ୍ୟ ନିଜର ଆବଶ୍ୟକ-ନିପୁଣତା ପ୍ରମାଣ କରିବାର ସୁଯୋଗ ଆଣିଦେଇଛି । ସଂସାର

ଭିତରେ ବହୁ ଅନୁନ୍ନତ ଗତାନୁଗତିକ ସମାଜର ଲୋକ ବହୁତ ଆଗକୁ ଆସି ଗଲେଣି । ବିଜ୍ଞାନର ପ୍ରଭାବ ଫଳରେ ମଣିଷ ଜାତିର ସୃଜନଶୀଳ ଶକ୍ତିର ତେଜସ୍ୱିତା ବହୁଗୁଣିତ ହୋଇଛି ।

କବି ଓ ଲେଖକ ଆବହମାନକାଳରୁ ପୃଥିବୀରେ ପ୍ରଥମେ ସୃଜନଶୀଳ ଶକ୍ତି ମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହୋଇଛନ୍ତି । ବିଜ୍ଞାନ ଆଗରୁ ଯେତେବେଳେ ପୃଥିବୀ ଭିତରେ ଗତାନୁଗତିକତାର ସ୍ଥିତି-ମନ୍ଥରତା ରାଜୁତି କରୁଥିଲା, ସେତେବେଳେ କବିର ଲେଖନୀହିଁ ସେହି ସ୍ଥିତାବସ୍ଥାକୁ ଭାଙ୍ଗିବାକୁ ଗ୍ରାହ୍ୟାର କରିଦେଇ ପାରୁଥିଲା । ଏହା ଯଦି କେଉଁଠି ନହୋଇପାରି ମନ୍ଥରତାର ଗଡ୍ଡାଳିକା ପ୍ରବାହ ମଧ୍ୟରେ ପ୍ରଗତିରସ୍ରୋତ ବାଟବଣା ହୋଇ ଯାଇଛି, ତାହାହେଲେ ଧରିନେବାକୁ ପଡ଼ିବ ଯେ ସେଠି ସମାଜ ଭିତରେ ନିଜର ଆବଶ୍ୟକ-ନିପୁଣତା ସମ୍ପର୍କରେ କବି, ଲେଖକମାନେ ସଚେତ ନୁହନ୍ତି । ସେଠି କବିମାନେ ଏବେ ମଧ୍ୟ ଭାବୁଛନ୍ତି ଯେ କବିତା ବିସ୍ମୟ କିଂବା ଅବସ୍ଥାର ଖିଆଲ ମାତ୍ର । କବି ଯେତେଦିନଯାଏ କବିତାକୁ ବିସ୍ମୟ କିଂବା ଅବସ୍ଥାର ଖିଆଲ ରୂପେ ଗ୍ରହଣ କରିଥିବ, ସେତେଦିନ ଯାଏ ସେ ନିଜ ଲେଖନୀ ମୁନରେ କୌଣସି ନୂଆ ଫସଲର ବୀଜ ଅଂକୁରିତ କରି ପାରିବ ନାହିଁ । ସେତେଦିନଯାଏ କବି ଲେଖନୀ ପ୍ରସୂତ ପ୍ରତୀକ ଏବଂ ରୂପକଳ୍ପର ପ୍ରତିଚ୍ଛାୟା ପୁରୁଣା "ଆଇଭରି ଟାଓ୍ୱାର" ଯୁଗର ବିଳପିତ ପ୍ରତିବାଣୀ ମଧ୍ୟରେ ଅଟକି ରହିଥିବ ।

ଆଜିକାର କବିତା କ୍ଷେତ୍ରରେ ଅନେକ କବି କେବଳ ପ୍ରତୀକଧର୍ମୀ ହୋଇ ପଡ଼ୁଛନ୍ତି । ପ୍ରତୀକବାଦହିଁ ଏ ଯୁଗର କବିତାରେ ଆଧୁନିକତାର ଲକ୍ଷଣ ବୋଲି ଅନେକ ବ୍ୟାଖ୍ୟାକାର ପ୍ରତିପାଦିତ କରିବାକୁ ଚାହାଁନ୍ତି । କିଂରୁ ହେଇ ପ୍ରତୀକବାଦ କ'ଣ ନିଜର ଆବଶ୍ୟକତା-ନିପୁଣ ଗୁଣଦ୍ୱାରା ପରୀକ୍ଷିତ ହୋଇପାରିବ ନାହିଁ ? ଆଜିକାର କବିତାର କି କୌଣସି ସାମାଜିକ ଆବଶ୍ୟକତା ନାହିଁ ? କବିତାର ସାମାଜିକ ଆବଶ୍ୟକତାକୁ ଯଦି ସ୍ୱୀକାର କରାଯାଉଛି, ତାହାହେଲେ କବିତା ମାଧ୍ୟମରେ ନିର୍ଯାସିତ ପ୍ରତୀକକୁ ମଧ୍ୟ ସାମାଜିକ ଦୃଷ୍ଟି ଭଙ୍ଗୀରେ ପରୀକ୍ଷା କରା ନଯାଉଛି କାହିଁକି ? ଏଣେ ପ୍ରତୀକ ସର୍ବସ୍ୱ କବିତା ହେବ, ତେଣେ ତାହା ସାମାଜିକ ଜୀବନର ଯଥାର୍ଥ ପ୍ରତିନିଧିତ୍ୱ କରିପାରୁ ନଥିବ, ଏପରି କବିତା ସାହିତ୍ୟ ରାଜ୍ୟରେ କେତେଦିନ ତିଷ୍ଠି ପାରିବ ?

ସମଗ୍ର ଓଡ଼ିଆ ସାହିତ୍ୟରେ "ଆଇଭରି ଟାଓ୍ୱାର" ତଥା ଅଣାକାରବାଦୀ ନିର୍ଗୁଣ କାବ୍ୟ କବିତାର ଅଭାବ ନାହିଁ । ଗୋଟିଏ ଦିଗରେ ପ୍ରେମ ତଥା ଭୋଗ-

ବିଳାସ ଏବଂ ଅନ୍ୟ ଢଙ୍ଗରେ ବୈରାଗ୍ୟ କାମନା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶୀର୍ଷ ସୀମାକୁ ଅତିକ୍ରମ କରିଗଲେ ମଧ୍ୟ, ଉଭୟଙ୍କ ମଧ୍ୟରୁ କେହିହେଲେ ସମକାଳୀନ ଜୀବନର ସାମଗ୍ରିକ ପରିଚୟ ଦେଇପାରି ନାହାଁନ୍ତି । ଐତିହାସିକ ବସ୍ତୁସ୍ଥିତି ଦୃଷ୍ଟିରୁ ସେ ସମୟର କବି, ଲେଖକମାନଙ୍କ ମଧ୍ୟରୁ ସମ୍ପ୍ରଦାୟ ସମାଜର ଯଥାର୍ଥବାଦୀ ଭୂମିକାର ପରିଚୟ ମିଳିବାର ସମ୍ଭାବନା ନଥିଲା । କିନ୍ତୁ ଆଧୁନିକ ଓଡ଼ିଆ କବିତା ଯେଉଁ ପୃଷ୍ଠଭୂମି ଉପରେ ଠିଆ ହୋଇଛି, ତାହା ପୃଥିବୀର ସର୍ବବ୍ୟାପୀ ସମାଜ-ସଚେତନ ସ୍ରୋତ କହିଲେ ଅତ୍ୟୁକ୍ତି ହେବନାହିଁ । ସମାଜର ସ୍ଥିତି ଏବଂ ପରିଣତି ସମ୍ପର୍କରେ ପୃଥିବୀବାସୀଙ୍କୁ ଆଜି ଆଉ କୌଣସି ଭୁଲାଣିଆ କଥା କହିବାକୁ ଯଦି କେହି ଲାଗୁଥାଏ, ତାହେଲେ ସେ କବି ନହୋଇ ଶାଳଗ୍ରାମ ପୂଜକ ହୋଇ ଯାଇପାରେ । ଜ୍ଞାନ ବିଜ୍ଞାନର ପ୍ରଭାବ ଫଳରେ ପୃଥିବୀର ଦୃଶ୍ୟମାନ ଜଗତରୁ ଅଦୃଶ୍ୟ ଜଗତ ପର୍ଯ୍ୟନ୍ତ ସବୁକଥା ଦେଖିବା ନଦେଖିବା ଲୋକଙ୍କ କାନରେ ଧ୍ୱନିତ ଓ ପ୍ରତିଧ୍ୱନିତ ହୋଇ ପାରୁଥିବା ଅବସ୍ଥାରେ ଆଧୁନିକ କାଳରେ କବିତାର ପ୍ରତୀକକୁ ପୁରୁଣା 'ଶଗୀଠାର' ମଧ୍ୟରେ ସୀମାବଦ୍ଧ କରି ରଖିବାର ଆଉ କୌଣସି ଆବଶ୍ୟକତା ଅନୁଭୂତ ହୁଏନାହିଁ ।

ଯେଉଁମାନେ କବିତାର "ଶଗୀଠାର" ମାଧ୍ୟମରେ ଗୋପନ ମନର ବ୍ୟକ୍ତିଗତ କାହାଣୀ ଶୁଣାଇ ମୁଷ୍ଟିମେୟ ପାଠକଙ୍କୁ ଆମୋଦିତ କରିବାକୁ ଚାହାଁନ୍ତି, କେବଳ ସେମାନଙ୍କଲାଗି କବିତା ବୟସ-ନିଶାର ରଙ୍ଗୀନ ଖିଆଲ ହୋଇପାରେ । କିନ୍ତୁ ଯେଉଁ ଖିଆଲ ଭିତରେ ସାମାଜିକ ଚିନ୍ତାର ସ୍ଥିରବିନ୍ଦୁ ନଥିଲେ, ଏ ସମୟରେ ପ୍ରତୀକକୁ ଆମେ "ଆଇଭରି ଟାୱାର" କିଂବା "ନିର୍ଗୁଣ" କବିତାଠାରୁ ଭିନ୍ନ କାହିଁକି ଭାବିବା ?



## ॥ ଧର୍ମ ଏବଂ ସାହିତ୍ୟକ ମୂଲ୍ୟବୋଧ ॥

ରୋମ ସାମ୍ରାଜ୍ୟ ପୋଡ଼ି ଧ୍ୱଂସ ହେଲାବେଳେ ସମ୍ରାଟ ନିରୋ ବୀଣା ବାଦନ କରି କୌଣସି ଶିଳ୍ପୀ ମନର ପରିଚୟ ଦେଇ ନାହାଁନ୍ତି । ସେଇ କାରଣରୁ ପୃଥିବୀବାସୀ ତାଙ୍କୁ ପାଗଳ କହନ୍ତି । ବସ୍ତୁନିଷ୍ଠ ସହୃଦ ପରିଚୟ ନଥିବା ମନୀଷ ପ୍ରାଣୀର ମନ ନିଂକାସ ସହିତ ସମ୍ରାଟ ନିରୋଙ୍କ ଉପାଖ୍ୟାନ ତୁଳନା କରାଯାଏ ।

ବିଶ୍ୱ-ସାହିତ୍ୟର ଭଣ୍ଡାରରେ ଯେତେଗୁଡ଼ିଏ କାଳଜୟୀ ମହାକାବ୍ୟ ଓ କ୍ଲାସିକ ସାଇତା ହୋଇଛି, ସେ ମଧ୍ୟରେ ମାନବତାବାଦୀ ମହାଗ୍ରନ୍ଥର ଅଭାବ ନାହିଁ । ସେ ଗ୍ରନ୍ଥଗୁଡ଼ିକ ଯେ ମନୀଷୀ ଜାତିର ତତ୍‌କାଳୀନ ଧର୍ମ ପ୍ରଣୋଦିତ ସାମନ୍ତବାଦୀ ବତ୍ସରର ବିଶ୍ୱସ୍ତ ରଚନା, ଏ ସମ୍ପର୍କରେ କାହାରି ସନ୍ଦେହର କୌଣସି ଅବକାଶ ନଥାଏ । ଅନେକ କ୍ଷେତ୍ରରେ ସେଇ ବସ୍ତୁନିଷ୍ଠ ସହିତ ଆଜିକାର ମନୀଷୀ ମନର କୌଣସି ସମ୍ପର୍କ ନଥିଲେବି, ଶ୍ରଦ୍ଧାଳୁ ପାଠକେ ତାକୁ ସେଇ କାଳର ମାନବ ଇତିବୃତ୍ତିର ବଳିଷ୍ଠ ଅଭିଲେଖ ରୂପେ ଆବେଗପୂର୍ଣ୍ଣ

ଚିନ୍ତାରେ ଅନ୍ୱେଷଣ କରନ୍ତି । ସେହି ବିଚାରଣା ଦୃଷ୍ଟିରୁ ଆଜିକାର ସାହିତ୍ୟରେ ମଣିଷ ଜୀବନର ବାସ୍ତବ ଧରାତଳ ସହିତ କୌଣସି ଯୋଗାଯୋଗ ରହିଛି କି ନାହିଁ, ତାହା ମୂଲ୍ୟାୟନ କରିବାର ଅବସର ଆସିଛି ।

ଧର୍ମ ଏବଂ ରାଜନୀତି ପରି ମଣିଷ ମନକୁ ଆମୂଳ ଓଲଟପାଲଟ କରିବାର ଶକ୍ତି ସାହିତ୍ୟ ଠାରେ ମଧ୍ୟ ରହିଛି । ଆବହମାନକାଳରୁ ଅନ୍ଧ ବିଶ୍ୱାସ ଏବଂ କୁସଂସ୍କାର ବଳରେ ମଣିଷର ମନକୁ ପ୍ରଭାବିତ କରି ପାରିଥିବା ଧର୍ମସଂସ୍ଥା, କ୍ରମେ କ୍ରମେ ଜ୍ଞାନ ବିଜ୍ଞାନର ପ୍ରଭାବ ଫଳରେ ନିଜ ଆସନରେ ଦୁର୍ବଳ ହୋଇପଡ଼ିଲେ । ସେଇହେତୁ ଧର୍ମସଂସ୍ଥା ଭିତରେ ରୂଢ଼ୀବାଦୀ ଆଭିମୁଖ୍ୟର ବହୁ ପରିବର୍ତ୍ତନ ସାଧିତ ହୋଇଛି । ଧର୍ମଯାଜକମାନେ ସେଥିରେ ସଂସ୍କାରମୂଳକ ଅଭିମୁଖ୍ୟ ଏବଂ ସେବା-ବୃତ୍ତି ଆରୋପକରି ମଣିଷ ମନକୁ ନୂଆ ପ୍ରେରଣାରେ ଉଦ୍‌ବୁଦ୍ଧ କରିବାଲାଗି ଚେଷ୍ଟା କରୁଛନ୍ତି । ତାହାସତ୍ତ୍ୱେ, ଧର୍ମ ବିଗ୍ରହ ଆଉ ପୁରୁଣା ସମାଜ ଭଳି ମଣିଷ ମନକୁ ଆକର୍ଷିତ କରି ପାରୁନାହିଁ ।

ଧର୍ମ ସ୍ଥାନରେ ସାଥି ହୋଇଛି ରାଜନୀତି । ଧର୍ମ ଯେପରି କୁସଂସ୍କାରର ବିରାଟ ଓହଳକୁ ଆଶ୍ରାକରି ମାଟି ଭିତରେ ଚେର ମାଡ଼ି ପରିଥିଲା, ରାଜନୀତି ସେହିପରି ଧର୍ମ ରୂପକ କଳ୍ପ ବୃକ୍ଷର ଶାଖାପ୍ରଶାଖା ବିସ୍ତାରିତକରି, ନିଜ ବାହୁଗ୍ରସ୍ତ ତଳକୁ ସକଳ ପ୍ରାଣୀଙ୍କୁ ଆଶ୍ରୟ ଦେବାପାଇଁ ଡ଼ାକ ଦେଇଥିଲା । କିନ୍ତୁ ସେଇ କଳ୍ପ ବୃକ୍ଷର ଛାଇରେ ସମଗ୍ର ମଣିଷ ସମାଜକୁ ସମାନ ରୂପେ ଆଦର ଓ ଆନନ୍ଦ ମିଳି ପାରିଲା ନାହିଁ । ସେଇ କାରଣରୁ ମଣିଷ ଜାତି ବହୁଦିନ ଧରି ଜଂଗଲର ପଶୁ ରାଜ ଭଳି ରାଜନୀତିକ ସତ୍ତାକୁ ମଧ୍ୟ ଭୟ କରୁଥିଲା । ଏଇ ଅବସ୍ଥା ଦୀର୍ଘକାଳ ଧରି ଚାଲିଲା ପରେ, ଆଜିର ପ୍ରଗତିଶୀଳ ବୈଜ୍ଞାନିକ ଯୁଗରେ ତାର ଯେ ବିଶେଷ କିଛି ପରିବର୍ତ୍ତନ ଘଟିଛି, ତା' ନୁହେଁ । ପୃଥିବୀର ରାଜନୀତି କ୍ଷେତ୍ରରେ ଶାହେ ବର୍ଷ ବ୍ୟାପୀ ଆଧୁନିକ ପରୀକ୍ଷା ନିରୀକ୍ଷା ତଥା ପ୍ରୟୋଗବାଦ ଭିତରେ ମଣିଷ ସମାଜଲାଗି ଚିନ୍ତା ଜଗତରେ ଯେଉଁ ନୂଆ ସମ୍ବେଦନଶୀଳତା ସୃଷ୍ଟି ହୋଇପାରିଛି, ତାହା ମଧ୍ୟ ଆଜି ବିନା ଅସ୍ତ୍ର ସାହାଯ୍ୟରେ ତିଷ୍ଠି ରହି ପାରିବା ସମ୍ଭବଜନକ ନୁହେଁ ।

କିନ୍ତୁ ଧର୍ମ ଓ ରାଜନୀତି ଯେଉଁ କ୍ଷେତ୍ରରେ ଆଜି ସଙ୍କୀର୍ଣ୍ଣ, ସେଇ କ୍ଷେତ୍ରରେ ସାହିତ୍ୟ ଓ ସଂସ୍କୃତିର ବିଜୟ ବାର୍ତ୍ତା ଶୁଣିଲେ ହତାଶ ମଣିଷ ମନରେ ବେଳେବେଳେ ନୂଆ ଆଲୋକ ରେଖା ସଞ୍ଚରିତ ହୁଏ । ସେହି ଆଲୋକ ରେଖା କ୍ଷୀଣ ହେଲେ ମଧ୍ୟ ତାର ବ୍ୟାପ୍ତିର ସୀମାକୁ ଅସ୍ୱୀକାର କରି ହେବନାହିଁ ।

ବିନା ଅସ୍ତ୍ର ବଳରେ ସାହିତ୍ୟିକ ଓ କବିର ଲେଖନୀ ପୃଥିବୀବାସୀଙ୍କ ମନକୁ ଯୁଗଯୁଗ ଧରି ବଶୀଭୂତ କରି ପାରିଛି । ମହାକବି ସେଲୀଙ୍କ ଭାଷାରେ ସାହିତ୍ୟିକ ଓ କବି un-recognised legislator ଭଳିଆ ନିଜକୁ ସମାଜର ପଥ-ପ୍ରଦର୍ଶକ ଆସନରେ ପ୍ରତିଷ୍ଠ କରି ବିନା ମିଳିଟାରୀ ତାକତରେ ପୃଥିବୀର ପ୍ରବଳତମ ଶାସକ ମାନଙ୍କୁ ସତର୍କବାଣୀ ଶୁଣାଇ ଆସିଛନ୍ତି । ସାହିତ୍ୟିକର ଲେଖନୀ ଇଙ୍ଗିତରେ ପୃଥିବୀରେ ବଡ଼ ବଡ଼ ବିପ୍ଳବ ସଫଳିତ ହୋଇଛି । ସାହିତ୍ୟିକ ନଥିଲେ ଫରାସୀ ବିପ୍ଳବ, ରୁଷ ବିପ୍ଳବ, ଚୀନ ଦେଶର ଚୀନ ବିପ୍ଳବ ଏବଂ ଚଳିତ ଦଶନ୍ଧିର ବାଂଲାଦେଶ ବିପ୍ଳବ ସମ୍ଭବପର ହୋଇ ନଥାନ୍ତା । ସାହିତ୍ୟ ଏବଂ ସଂସ୍କୃତି ନଥିଲେ ପାଂଚଶହ ବର୍ଷର ପରାଧୀନ ଭାରତ ମୁଲକ କେବେ ସ୍ୱାଧୀନତାର ସ୍ୱପ୍ନ ଦେଖିପାରି ନଥାନ୍ତା । ସାହିତ୍ୟ ନଥିଲେ ରାଜନୀତି ଓ ଧର୍ମନୀତି ଅନ୍ଧଭଳିଆ ବାଟ ଅଣ୍ଡାଳି ବୁଲୁଥାନ୍ତେ ।

ଆଜି କିନ୍ତୁ ଏଇଭଳି ଅଦଭୂତ କରାମତି ସମ୍ପନ୍ନ ସାହିତ୍ୟିକର ବଳୁ ଲେଖନୀ ମୁନରେ ମାତ୍ର ତିନି ଦଶନ୍ଧିର ସ୍ୱାଧୀନ ପାଣି ପାଗର ବିଜୟ ଉଲ୍ଲାସ ଭିତରେ ଏଭଳି କ୍ଲୀବତ୍ୱ ଆସିଗଲା କାହିଁକି ? ଆଜିକାର ରକେଟ ଯୁଗରେ ସାହିତ୍ୟିକ ନିଜକୁ କାହିଁକି ତ୍ରିଶଙ୍କୁ କହୁଛି ? ହତାଶା, ଗ୍ଳାନି ଓ ବ୍ୟର୍ଥତାର ଅଭିଶାପ ମଧ୍ୟରେ ଜୀବନଟା ଜଳିପୋଡ଼ି ଯାଉଛି ବୋଲି କାହିଁକି ମେଷ ଶାବକ ଜଳାଧାର ଲଙ୍ଘନ କଲାବେଳେ ଭୟରେ ଚିତ୍କାର କଲାଭଳି, ସାହିତ୍ୟିକ ବିଳାପ କରୁଛି କାହିଁକି ? କାହିଁକି ସାହିତ୍ୟିକର ମନ ମୁକୁରରେ ସମାଜର ବିଚିତ୍ର ଅନୁଭୂତି ପ୍ରତିଫଳିତ ହୋଇ ପାରୁନାହିଁ ? କାହିଁକି ସାହିତ୍ୟିକ ଆଜି ବ୍ୟକ୍ତିବାଦୀ ସାଜି ବ୍ୟକ୍ତି ସର୍ବସ୍ୱ ଦୁନିଆର ଚିତ୍ରପଟ ଆଙ୍କୁଛି ? କାହିଁକି ସାହିତ୍ୟିକ ଆଜି ନିଜ ମନରୁ ଆଦର୍ଶ ସୃଷ୍ଟି କରିନପାରି ଅନ୍ୟ ପ୍ରଚ୍ଛରିତ ଆଦର୍ଶରେ ବାଟବଣା ହୋଇ ଘୂରୁଛି ? କାହିଁକି ସାହିତ୍ୟିକ ଆଜି ରାଜନୈତିକ ଘୋଡ଼ା ଉପରେ କୋରଡ଼ା ଚଳାଇବାର ଶକ୍ତି ହରାଇ ଘୋଡ଼ାର ଲାଞ୍ଜକୁ ହାତରେ ଜାବୁଡ଼ି ଧରି ଆରୋହୀଙ୍କ କୃପାପାତ୍ରଲାଗି ସାମ୍ନା ରାସ୍ତାରେ ପାଦ ଚପି ଚପି ଚାଲିଛି ?

ଧର୍ମସଂସ୍ଥା କହିଲେ ଆଜିର ମସ୍ତିଷ୍କ ମନକୁ ପ୍ରଭାବିତ କଲାଭଳି କେତେ ଗୁଡ଼ିଏ ଉତ୍ସବ ଆଡ଼ମ୍ବରକୁ ବୁଝାଏ । ସେଇଭଳି ଉତ୍ସବ ଆଡ଼ମ୍ବର ଜରିଆରେ ଅଚେତନ ମସ୍ତିଷ୍କ ମନକୁ କାବୁ କରିବା ପାଇଁ ଆବହମାନକାଳରୁ ଚେଷ୍ଟା ଚାଲିଛି । ପୃଥିବୀର ସବୁ ଦେଶରେ ଧର୍ମସଂସ୍ଥା ମାନଙ୍କରେ ସେଇପରି ଉତ୍ସବ ଆଡ଼ମ୍ବର ରହିଛି । ଧର୍ମପ୍ରେମୀ ମାନଙ୍କ ବିଶ୍ୱାସ ନିଷ୍ଠାକୁ ମଧ୍ୟ ସୋଭିଏତ୍ ରୁଷଭଳି

କମ୍ୟୁନିଷ୍ଟ ରାଷ୍ଟ୍ରରେ ସ୍ୱାଧୀନତା ଦିଆଯାଇଥାଏ । କିନ୍ତୁ ଭାରତଭଳି ଅନ୍ୟ କେଉଁ ଦେଶରେ ଧର୍ମାନୁଷ୍ଠାନ ଗୁଡ଼ିକ ମଣିଷର ବାସ୍ତବ ଜୀବନରୁ ପରିବର୍ତ୍ତିତ ଅବସ୍ଥାରେ ଏତେ ଖାପଛଡ଼ା ହୋଇ ରହୁ ନାହାଁନ୍ତି । ସୋଭିଏତ୍ ରୁଷ ଭଳି ଦେଶରେ ଖ୍ରୀଷ୍ଟିଆନ ଧର୍ମାବଲମ୍ବୀ, ଇସଲାମ ଏବଂ ବୌଦ୍ଧ ମତାବଲମ୍ବୀ ମାନଙ୍କର ବହୁ ଅଞ୍ଚଳରେ ସଂଖ୍ୟା ଗରିଷ୍ଠତା ରହିଥିଲେ ମଧ୍ୟ, ସେହିସବୁ ଅଞ୍ଚଳରେ କମ୍ୟୁନିଷ୍ଟ ଆଦର୍ଶ ଚାଳିତ ରାଷ୍ଟ୍ରର ମୌଳିକ କାର୍ଯ୍ୟକ୍ରମରେ କୌଣସି ବାଧା ଆସେ ନାହିଁ । ବୌଦ୍ଧ ଧର୍ମ ପ୍ରଭାବିତ ଅଞ୍ଚଳରେ କମ୍ୟୁନ ବା ମିଳିତ ପରିବାର ଯୋଜନା ଯେପରି ସଫଳକାମ ହୋଇଛି; ଧର୍ମ ମତାବଲମ୍ବୀଙ୍କ ସଂଖ୍ୟା ଦୃଷ୍ଟିରୁ ରୁଷ ଦେଶରେ ଯଥାକ୍ରମେ ପ୍ରଥମ ଏବଂ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବା ଖ୍ରୀଷ୍ଟାନ ଏବଂ ଇସଲାମ ଧର୍ମ ପ୍ରଭାବିତ ଅଞ୍ଚଳରେ ମଧ୍ୟ ସେହିପରି ଗ୍ରାମ-ସୋଭିଏତ୍ ଏବଂ କୋଲେକ୍ଟିଭ ଫାର୍ମ ଗୁଡ଼ିକ ସଫଳ କାମ ହୋଇ ପାରୁଛନ୍ତି । ରୁଷ ଦେଶକୁ ଛାଡ଼ିଦେଲେ ଖ୍ରୀଷ୍ଟାନ ଧର୍ମ ପ୍ରଭାବିତ ଆମେରିକା, ବିଲାତ ଏବଂ ଜର୍ମାନୀ ପ୍ରଭୃତି ଦେଶରେ ଧର୍ମ ସଂସ୍ଥା ଗୁଡ଼ିକ ପ୍ରଗତିଶୀଳ ଆଭିମୁଖ୍ୟ ଦ୍ୱାରା ମଣିଷର ବାସ୍ତବ ଜୀବନ ସଙ୍ଗେ ମେଳଖାଇ ଚାଲିବାକୁ ଚେଷ୍ଟା କରୁଛନ୍ତି । ଖାଲି ସେତିକି ନୁହେଁ, ସେହିସବୁ ଧର୍ମସଂସ୍ଥା ଗୁଡ଼ିକରେ ସାମୂହିକ ଜୀବନ ତଥା ଏକତାର ପ୍ରତିଫଳନ ମିଳୁଛି ଏବଂ ମାନବ ସମାଜର ଦୁଃଖ ଦୁର୍ଦ୍ଦଶାପ୍ରତି ସମବେଦନାର ଆବେଗ ମଧ୍ୟ ସୃଷ୍ଟି କରାଯାଇ ପାରୁଛି । କିନ୍ତୁ ଭାରତୀୟ ଧର୍ମସଂସ୍ଥା ଗୁଡ଼ିକରେ ଆଜି ବ୍ୟକ୍ତି-କେନ୍ଦ୍ରିକ ଜୀବନର ଆଭିମୁଖ୍ୟ ଛଡ଼ା ଆଉ କୌଣସି ବାସ୍ତବ ଜୀବନ ଦେଖିବାକୁ ମିଳେ କି ?

ଆଜିକାର ରକେଟ ଯୁଗରେ ପ୍ରତିବର୍ଷ ମେଳା ମଉଚ୍ଛବ ଭିତରେ ବହୁ କଳ୍ପିତ ଇଷ୍ଟ ଦେବତାଙ୍କର ପୂଜା ପାର୍ବଣ, ଜୀବନର ବାସ୍ତବ ଆବଶ୍ୟକତା ସହିତ ସମ୍ପର୍କ ନଥିବା ଔପଚାରିକ ଢଙ୍ଗରେ ସମ୍ପନ୍ନ ହୋଇଥାଏ । ବନ୍ୟାର କରାଳ କବଳରେ ଏବଂ ମରୁଡ଼ିର ଜ୍ୱଳନ୍ତ ପ୍ରକୋପରେ ମାନବ ଶିଶୁ ଆର୍ତ୍ତନାଦ କଲାବେଳେ, ଭାରତର ବହୁ ତଥାକଥିତ ଧର୍ମାନୁଷ୍ଠାନରେ ତାମସିକ ପୂଜା ଉପଚାରର ସରଗରମି ଦେଖିଲେ ଧର୍ମ କିପରି ମଣିଷର ବାସ୍ତବ ଜୀବନରୁ ଖାପଛଡ଼ା ହୋଇଯାଇଛି, ତାର ଅବଧାରଣା କରାଯାଇ ପାରିବ । ଧର୍ମନୀତିକ ଉତ୍ସବ ଅନୁଷ୍ଠାନ ସମ୍ପର୍କରେ ଦେଶର ବହୁଦର୍ଶୀ ବିଚାରକ ଏବଂ ପଣ୍ଡିତଜନ ଯେଉଁସବୁ ଗ୍ରନ୍ଥ ଏବଂ ଆଲୋଚନା ପ୍ରକାଶ କରନ୍ତି, ସେଥିରେ ଧର୍ମକୁ କେବେ ମାନବ ଜୀବନର ବାସ୍ତବ ଆଭିମୁଖ୍ୟ କରାଯାଇ ପାରିବ କି ନାହିଁ ତାର କୌଣସି ଦିଗ୍‌ଦର୍ଶନ ମିଳେ ନାହିଁ । ସ୍ୱାମୀ ବିବେକାନନ୍ଦଙ୍କ ଭଳି ମହାପୁରୁଷ ଦୁର୍ଗା ଠାକୁରାଣୀଙ୍କୁ ନିଜ ଜୀବନର ଅନ୍ୱେଷା ଏବଂ ସାଧନା ଫଳରେ ପ୍ରେମଶକ୍ତି ତଥା

ସର୍ବଶକ୍ତିରୂପେ ଆଖ୍ୟାତ କରିଥିଲେ ମଧ୍ୟ, ଦୁର୍ଗାପୂଜାରୁ ଆଜି ବାସ୍ତବ ଜୀବନ ଲାଗି ପ୍ରେମ ଓ ସତ୍ୟ ଶକ୍ତିର ଦିଗ୍‌ଦର୍ଶନ ମିଳିପାରୁଛି କି ନାହିଁ ତାହା ଆଲୋଚନା କରାଯିବା ଉଚିତ। ଯଦି ନମିଳୁଛି, ତାହାହେଲେ ବାସ୍ତବ ଜୀବନ ସହିତ ସମ୍ପର୍କ ରହିତ ସେପରି ଔପଚାରିକ କ୍ରିୟାକାଣ୍ଡର ଆଧୁନିକ ମଣିଷ ଇତିହାସ ସହିତ କୌଣସି ସମ୍ପର୍କ ସୁଦ୍ଧା ନାହିଁ।

ଜଣେ ଅବସରବାଦୀ ପଣ୍ଡିତ ଥରେ ଜଣେ ସମ୍ପାଦକଙ୍କୁ ଖଣ୍ଡିଏ ପତ୍ରଚିତ୍ର ପଠାଇ ଅନୁରୋଧ କରିଥିଲେ ଯେ, ଦୁର୍ଗା ଦେବୀଙ୍କର ମୃଣ୍ମୟ ମୂର୍ତ୍ତି ସେହି ପତ୍ରଚିତ୍ର ଅବଲମ୍ବନରେ ନିର୍ମାଣ କରିବା ଲାଗି ମୂର୍ତ୍ତିଶିଳ୍ପୀମାନଙ୍କୁ ନିବେଦନ କରାଯାଉ। ପଣ୍ଡିତ ମହାଶୟଙ୍କ ଯୁକ୍ତି ହେଉଛି, ଦଶଭୁଜା ଦୁର୍ଗାମୂର୍ତ୍ତି ଅଙ୍କନ ଉତ୍କଳୀୟ ଭାସ୍କର୍ଯ୍ୟର ପରିପନ୍ଥୀ କାର୍ଯ୍ୟ। ଏହା ବଙ୍ଗଳା କବି କୃତ୍ତିବାସଙ୍କ ରାମାୟଣର ପରିକଳ୍ପନା ହୋଇଥିବାରୁ ଏଭଳି ବଙ୍ଗୀୟ ମତରେ ଦଶଭୁଜା ଦୁର୍ଗାଦେବୀଙ୍କର ପ୍ରଚାର ଦ୍ୱାରା ଓଡ଼ିଆ ସଂସ୍କୃତି ବିକଳାଙ୍ଗ ହୋଇପଡ଼ୁଛି। ବିଜ୍ଞ ସମ୍ପାଦକ ମହୋଦୟ ଉକ୍ତ ପ୍ରସ୍ତାବରେ ଉଲ୍ଲିଖିତ ଚିନ୍ତାକୁ କିପରିଭାବେ କାର୍ଯ୍ୟକାରୀ କରାଇଲେ, ତାହା ଜଣାପଡ଼ୁ ନଥିଲେ ବି ପ୍ରଶ୍ନଟା ହେଉଛି ଆଜିକାର ରକେଟ ଯୁଗରେ ଏଭଳି ବୁଦ୍ଧିନାଶକାରୀ ଆଲୋଚନାର ଆବଶ୍ୟକତା କେଉଁଠି ?

ଏଭଳି ପ୍ରଶ୍ନର ଆଲୋଚନା ଅବସରକାଳୀନ ପଣ୍ଡିତ ଓ ସାହିତ୍ୟିକଙ୍କ ଅଳସଚିନ୍ତାକୁ ଖୋରାକ ଯୋଗାଇ ଦେଇପାରେ, କିନ୍ତୁ ଆଧୁନିକ ବସ୍ତୁନିଷ୍ଠ ସହିତ ଏ ଆଲୋଚନାର ସମ୍ପର୍କ କେଉଁଠି ? ଆଜିକାର ବୈଜ୍ଞାନିକ କାରିଗରୀ ଯୁଗରେ ଯେଉଁଠି ଦୁର୍ଗା ମୂର୍ତ୍ତିର ନେତ୍ର ପଟଳରେ ବିଜୁଳି ବଲ୍‌ବ ଖଞ୍ଜାଯାଉଛି, ସେଠି ଦୁର୍ଗା ଦଶଭୁଜା ହେଲେ ସ୍ୱଜାତୀୟା ବା ବିଜାତୀୟା ହୋଇଯିବାର ପ୍ରଶ୍ନ ଉଠୁଛି କାହିଁକି ? ରକେଟ ଯୁଗରେ ଦୁର୍ଗାଙ୍କୁ ସହସ୍ର ବାହୁ କରି ସୁଇଚ ଟିପି ବାୟୁଯାନରେ ଆକାଶମାର୍ଗରେ ଉଡ଼ାଇନେଲେ କ୍ଷତିଟା କଣ ? ସେପରି କାର୍ଯ୍ୟରେ ଆପାତତଃ ଦେଶର କାରିଗରୀ ନିପୁଣତାର ପରିଚୟ ମିଳନ୍ତା। ସେପରି କୌଣସି କାରିଗରୀ ହସ୍ତ କୌଶଳରେ ବରଂଚ ଆଧୁନିକ ଜୀବନର ବାସ୍ତବ ଆବଶ୍ୟକତା ସହିତ ସମ୍ପର୍କ ରକ୍ଷା କରାଯାଇ ପାରନ୍ତା।

ଆଜିକାର ଯୁଗରେ ମୃଣ୍ମୟ ମୂର୍ତ୍ତିର ହସ୍ତ କୌଶଳ ମଧ୍ୟ ବୈଜ୍ଞାନିକ ଉଦ୍‌ଭାବନକୁ ଅପେକ୍ଷା କରୁଛି। ବିଜ୍ଞାନର ବିକାଶ ଫଳରେ ମୃଣ୍ମୟ ମୂର୍ତ୍ତିକାରର ଜୀବନ ବିପଦାପନ୍ନ ଅବସ୍ଥାରେ ପହଂଚଲାଣି। ଏହା କ୍ରମେ ଏକ କ୍ଷୟିଷ୍ଣୁ ହସ୍ତ

ଶିଳ୍ପରେ ଯଥେଷ୍ଟ ହେଉଛି । ଦୁର୍ଗାଦେବୀଙ୍କର ଶାସ୍ତ୍ରୀୟ ରୂପ ସହିତ ମୂର୍ତ୍ତି-ଶିଳ୍ପୀର ଶାଶ୍ୱତ ଜୀବନ ଜିଜ୍ଞାସାର କିଛି ସମ୍ପର୍କ ରହୁନାହିଁ । ତା' ନହେବାରୁ ଶାସ୍ତ୍ର ଗୁଡ଼ାକ ଖାଲି ମିଉଜିୟମର ସମ୍ପଦ ହୋଇ ଯାଉଛନ୍ତି । ଭିକ୍ଟୋରିଆ ଯୁଗର ବାବୁର ବାଳକୁ ଇଂରେଜ ଯୁବକ ଆଜି ଆଦର କରେନାହିଁ । ଜୀବନରେ କେବେହେଲେ ପେଟ୍ରୋଲରେ ଧୂଆହୋଇ ଇସ୍ତ୍ରି ଲାଗି ନଥିବା ଅଜାଙ୍କ ଅମଳର ଗରମ କୋଟ ଏବଂ ତା' ଉପରେ ପଡ଼ିଥିବା ଜରି ଗୁଦରକୁ ଆମେ ଶାସ୍ତ୍ରୀୟ ପୋଷାକ ବୋଲି ଗ୍ରହଣ କରି ପାରିବା ନାହିଁ । ବନସ୍ତର ବାଘ ବଂଚଲେ ତା'ର ହେଂଟାଳ ଧ୍ୱନି ଶିଆଳ ରବ ସଙ୍ଗେ ମିଶିଲା କି ଶାଶ୍ୱତ ବାଘ ଗର୍ଜନ ସଙ୍ଗେ ଖାପ ଖାଇଲା, ତାହା ବିଚାରକୁ ଅଣାଯିବ । ପ୍ରଶ୍ନ ହେଉଛି, ଧର୍ମ ଯେତେବେଳେ ମୋଟେ ଆଉ ଜୀବନର ଆବଶ୍ୟକତା ପୂରଣ କରି ପାରୁନାହିଁ, ସେତେବେଳେ ଦେବା-ଦେବୀ କି ପୋଷାକରେ ଆସିବେ କିଂବା କି ଯାନବାହନରେ ବସିବେ ତାର ଆଲୋଚନାର ଆବଶ୍ୟକତା କେଉଁଠି ?

ମଣିଷ ଜୀବନର ପରିବର୍ତ୍ତିତ ମୂଲ୍ୟବୋଧ ସଙ୍ଗେ ଭାରତୀୟ ଧର୍ମ ଆଜି ଭାରସାମ୍ୟ ହରାଇଛି । ପାକିସ୍ତାନ ଏକ ଧାର୍ମିକ ରାଷ୍ଟ୍ର ହେଲେବି ତାହା ପୃଥିବୀର ପୁରାତନ ଅର୍ଥରେ ନାସ୍ତିକ ଏବଂ ଧର୍ମ ବିରୋଧୀ ସଂସ୍ଥାମାନଙ୍କ ସହିତ ସମ୍ପର୍କ ଯୋଡ଼ି ପାରୁଛି । ଏହାର କାରଣ ହେଲା, ସେଠି ଧର୍ମ ସହିତ ଆଧୁନିକ ମାନବ ଜୀବନର ବାସ୍ତବ ଆବଶ୍ୟକତାର ସମ୍ପର୍କ ରହିଛି ।

ଆମ ଦେଶରେ ଧର୍ମ ସହିତ ବାସ୍ତବ ଜୀବନର ଆଜି କିଛି ସମ୍ପର୍କ ଥିଲେ ତାହା ଆମ ସାହିତ୍ୟିକଙ୍କ ଲେଖା ମାଧ୍ୟମରେ ପ୍ରତିଫଳିତ ଏବଂ ପରିସ୍ଫୁଟ ହୁଅନ୍ତା । ବର୍ତ୍ତମାନର ପୃଷ୍ଠଭୂମିରେ ପୁରାତନ ଧର୍ମସଂସ୍ଥାର ଶବବ୍ୟବଚ୍ଛେଦ କରି ସାହିତ୍ୟିକ ସେଥିରେ ନୂଆ ଆତ୍ମା ଫୁଙ୍କିବାକୁ ସମର୍ଥ ହୁଅନ୍ତା । କିନ୍ତୁ ସାହି-ତ୍ୟିକ ତାହା କରିବାକୁ ଅକ୍ଷମ । ଏହାର କାରଣ ସାହିତ୍ୟିକ ଧର୍ମକୁ ଡରୁଛି ଏବଂ ଧର୍ମ ରକ୍ଷାକାରୀ ସାମନ୍ତବାଦୀ ତଥା ପୁଞ୍ଜିବାଦୀ ରାଜନୀତିକୁ ମଧ୍ୟ ଡରୁଛି । ଧର୍ମ ବିରୋଧୀ କଥା କହିଲେ ସାହିତ୍ୟିକ ଏ ଦେଶରେ ଚୀନପନ୍ଥୀ ହୋଇଯାଏ । ଧର୍ମ ଧାରଣା କଥା କହିଲେ, ପୁନରୁତ୍ଥାନବାଦୀ (**Revivalist**) ମାର୍କିନ ଦଲାଲ ହୋଇଯିବାର ଭୟ ମଧ୍ୟ ରହିଛି । ତେଣୁ ସାହିତ୍ୟିକ ଚାହେଁ— ଧର୍ମ ରକ୍ଷା ହେଉ, ରାଜନୀତିକ ସ୍ଥିତାବସ୍ଥା ବଂଚିରହୁ ଏବଂ ତାରି ଭିତରେ ସାହିତ୍ୟ ମଧ୍ୟ ଆଗେଇ ଚାଲିଥାଉ !





## ।। କ୍ଲାସିକ ସାହିତ୍ୟରେ ସମାଜ ଚେତନା ।।

ସଙ୍ଗ, ସମ୍ପର୍କ ଏବଂ କାମନା ବର୍ଜିତ ସାହିତ୍ୟର ଆଧୁନିକ ପୃଥିବୀରେ ସ୍ଥାନ ନାହିଁ । ନିରାକାର, ନିରାବଲମ୍ବୀ, ନିରପେକ୍ଷ ସାହିତ୍ୟର ଯୁଗ ଶେଷ ହୋଇ ଯାଇଛି । ଆଦିକବି ବାଲ୍ମୀକିଙ୍କ ମୁଖନିଃସୃତ ପ୍ରଥମ କାବ୍ୟ ଶ୍ଳୋକ ଯେତେବେଳେ ବ୍ୟାଧ ଶରାହତ କ୍ରୌଞ୍ଚ ଯୁଗଳର ବେଦନାର୍ତ୍ତ ମୁହୂର୍ତ୍ତରେ ଜନ୍ମଲାଭ କରିଥିଲା, ସେତେବେଳେ ବି ତାହା ସଙ୍ଗ କିମ୍ବା କାମନା ବର୍ଜିତ ନଥିଲା । ସଙ୍ଗ ତଥା ଆସକ୍ତି ବର୍ଜିତ ମଣିଷର କର୍ଣ୍ଣ କୁହରରେ ବେଦନାତୁର ପ୍ରାଣର କରୁଣ ନିବେଦନ କେବେହେଲେ ପ୍ରତିଧ୍ୱନି ସୃଷ୍ଟି କରି ପାରେନା !

ଆଦିକବି ବାଲ୍ମୀକିଙ୍କ ସାହିତ୍ୟ ସଙ୍ଗ ଏବଂ କାମନା ବର୍ଜିତ ହୋଇଥିଲେ ଶ୍ରୀରାମ ରାମଚନ୍ଦ୍ର ଚଉଦ ବର୍ଷଯାଏ ସୀତାଙ୍କୁ ଅପେକ୍ଷା କରିଥାନ୍ତେ କାହିଁକି ? କାହିଁକି ବା ଚଉଦ ବର୍ଷବ୍ୟାପୀ କଠୋର କୃଚ୍ଛ୍ର ସାଧନାରେ ସେ ନିଜ ଜୀବନକୁ ତିଳତିଳ କରି ଆହୁତି ଦିଅନ୍ତେ ?

ପ୍ରକୃତିଦତ୍ତଗୁଣଭାବେ ମାନବ ସମାଜରେ ରହିଥିବା ସମ୍ପର୍କବୋଧକୁ ଜାଗ୍ରତ ଏବଂ ବିକଶିତ କରିବାପାଇଁ ମହାନ କବି ବାଲ୍ମୀକି ରାମଚନ୍ଦ୍ରଙ୍କ ପରି ପିତୃଭକ୍ତ ସନ୍ତାନ ଓ ଭରତଙ୍କପରି ଭ୍ରାତୃବତ୍ସଳ ରାଜକୁମାରଙ୍କ ଅବତାରଣା କରିଥିଲେ । ତା' ନହୋଇଥିଲେ ଶିକାରୀ ଯୁଗର ସଙ୍ଗ-ସମ୍ପର୍କ-ବିହୀନ ଉପଭୋଗ ସର୍ବସ୍ୱ ଆଦିମ ବର୍ବରତା ଭିତରୁ ଅପେକ୍ଷାକୃତ ବିକାଶଶୀଳ ସାମନ୍ତବାଦୀ ସମାଜର ଅଭ୍ୟୁଦୟ ଘଟି ନଥାନ୍ତା । ଆଦିମ ବର୍ବରତାମୁକ୍ତ ସମାଜକୁ କ୍ରମାଗତଭାବେ ଉନ୍ନତ ରୁଚିବୋଧ ପଥରେ ଅଗ୍ରଗାମୀ କରାଇବା ପାଇଁ ଆଦିକବି ଯେଉଁସବୁ ଲୋକାୟିତ ମୂଲ୍ୟବୋଧ ପ୍ରତିଷ୍ଠା କଲେ, ସେଥିପାଇଁ ତାଙ୍କ ରଚିତ ମହାକାବ୍ୟ ପୃଥିବୀ ସାହିତ୍ୟରେ ଅମରତ୍ୱ ଲାଭ କରିଚି ।

ବ୍ୟାଧ ଶରାହତ କ୍ରୌଞ୍ଚ ମିଥୁନର ବେଦନାବିଧୁର ପ୍ରାଣ-ଲିପିକୁ ଭାଷା ଦେବାପାଇଁ ମହାକବି ଯେଉଁ ସାହିତ୍ୟ ସୃଷ୍ଟିକଲେ ତାର ମାଧ୍ୟମରେ ତତ୍କାଳୀନ ସମାଜରେ ନବ ମୂଲ୍ୟାୟନ ସମ୍ଭବପର ହୋଇଥିଲା । ଉପଭୋଗ-ସର୍ବସ୍ୱ ରାଜ-ସିଂହାସନର ଚନ୍ଦ୍ରାବିକଚିତ ସିଂହଦୁଆର ଆଗରେ ଯେଉଁ ବିକ୍ର କଳଣୀ ଲାଗିଥିଲା, ତା'ରି ଉପରେ ପ୍ରଚଣ୍ଡ ମୁଷ୍ଟ୍ୟାଘାତ କରି ତ୍ୟାଗ, ତିତିକ୍ଷା ଏବଂ ରାଜକୀୟ କର୍ତ୍ତବ୍ୟ ପରାୟଣତାର ମନ୍ତ୍ର ଶିକ୍ଷା ଦେବାଲାଗି ସେତେବେଳଯାଏ କୌଣସି ବଳିଷ୍ଠ ପୁରୁଷର ଆବିର୍ଭାବ ଘଟି ନଥିଲା । ଗୋଟିଏ କ୍ଷୟିଷ୍ଣୁ ଏବଂ ଅନ୍ୟଟି ବିକାଶୋନ୍ମୁଖୀ— ଏଇ ଦୁଇ ବିପରୀତମୁଖୀ ସଭ୍ୟତାର ସନ୍ଧିକ୍ଷଣକୁ ଏପରି ନିପୁଣଭାବେ ଚିତ୍ରଣ କରିଥିବା ରାମାୟଣ ମହାକାବ୍ୟ କେବେହେଲେ କଣ ମଣିଷ ଜାତିକୁ ସମାଜର ପ୍ରତିକୂଳ ଅବସ୍ଥାରେ ଗ୍ରହଣଆ ହୋଇ ପଳାୟନପନ୍ଥୀ ସାଜିବାକୁ ଉପଦେଶ ଦେଇପାରିବ ? ସଂସାର ଭିତରେ ଭୋଗ ଉପଭୋଗ କରିବାପାଇଁ ମଣିଷଜାତି ନିମନ୍ତେ ଯେଉଁ ସଂସ୍କୃତିଗତ ଅଧିକାର ସୁନ୍ଦର ପରିବେଶ ମଧ୍ୟରେ ସୁରକ୍ଷିତ ହୋଇ ରହିଚି, ତାର ସୀମା ସରହଦ ମଧ୍ୟରେ ଜୀବନକୁ ପରିପୂର୍ଣ୍ଣ ସମ୍ଭୋଗଶୀଳ କରିବାଲାଗି ବାଗ୍ରରବର୍ଜିତ ଆଦିମ ହିଂସ୍ର ସମାଜକୁ ପୃଥିବୀର ସର୍ବପ୍ରଥମ କବିଗୁରୁ ଶିକ୍ଷା ଦେଇଯାଇଛନ୍ତି ।

ରାମାୟଣ ମହାକାବ୍ୟର ଚରିତାଂଶରେ ଅଧିକତର ହୃଦୟଗ୍ରାହୀ ସୌନ୍ଦର୍ଯ୍ୟର ରୁଚିଶୀଳ ଉପଭୋଗ ପାଇଁ, ଯୁବକ ରାମଚନ୍ଦ୍ର ଦେହ-ସମ୍ଭୋଗ ଲାଳସୀ ତାଡ଼କା ରାକ୍ଷସୀକୁ ହତ୍ୟା କରିଛନ୍ତି । ଉତ୍ପାତକାରୀ କ୍ଷତ୍ରିୟମାନଙ୍କର ନିପାତନ ଉଦ୍ଦେଶ୍ୟରେ ଏକବିଂଶବାର ପୃଥିବୀ ପରିକ୍ରମା କରିଥିବା ଦର୍ପବିଜୟୀ ବୀର ପରଶୁରାମ ବିନା ଯୁଦ୍ଧରେ ସମଯୋଦ୍ଧା ରାମଚନ୍ଦ୍ରଙ୍କ ସହିତ ସଖ୍ୟ ସ୍ଥାପନକରି ଉନ୍ନତ ବିଚାରଶୀଳତାର ପରିଚୟ ଦେଇଛନ୍ତି । ରାମଚନ୍ଦ୍ରଙ୍କ ହାତରେ ନାରୀ

ହରଣକାରୀ ଖ୍ରାମ ପରାକ୍ରାନ୍ତ ରାବଣ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି । ମହାକାବ୍ୟର ପୃଷ୍ଠାରେ ଏଇସବୁ ପ୍ରେମୀଂଚଳର ବୀରତ୍ୱପୂର୍ଣ୍ଣ କାହାଣୀ ଯାହାଙ୍କ ସମ୍ପର୍କରେ ଲିପିବଦ୍ଧ ସେଇ ରାମଚନ୍ଦ୍ର ନିଜେ ପୁଣି ବୈମାତୃକ ଷଡ଼ଯନ୍ତ୍ରର ଶିକାର ହୋଇ ଚତୁର୍ଦ୍ଦବର୍ଷ ବଣ ପାହାଡ଼ରେ ନିର୍ବାସିତଭାବେ ବୁଲୁଛନ୍ତି ।

ମହାକାବ୍ୟର ବିଶେଷତ୍ୱ ହେଲା ବ୍ୟକ୍ତି ଜୀବନର ଦୁଃସହ ଦୁର୍ବିପାକ ଏବଂ କାବ୍ୟ ଚରିତ୍ରର ଉତ୍ଥାନ ପତନ ମଧ୍ୟରେହିଁ ସେ ସୃଷ୍ଟି ସୌନ୍ଦର୍ଯ୍ୟକୁ ଅଧିକତର ପ୍ରତିଷ୍ଠିତ କରିଛନ୍ତି ଏବଂ ତାର ମଧ୍ୟରେ ସମ୍ପଦଶାଳିନୀ ପୃଥିବୀକୁ ଉପଭୋଗ କରିବା ପାଇଁ ମଣିଷ ଜାତିକୁ ପ୍ରେରଣା ଦେଇଛନ୍ତି । ବିମାତାଙ୍କ ଷଡ଼ଯନ୍ତ୍ରର ଦାରୁଣ ଅଗ୍ନି–ପରୀକ୍ଷା ମଧ୍ୟରେ ରାଜକୁମାର ରାମଚନ୍ଦ୍ରଙ୍କର ସୁକୁମାର ଯୌବନ ତିଳତିଳ ଦଗ୍ଧୀଭୂତ ହୋଇଛି । କିନ୍ତୁ ତାର ଭିତରେ ଆଜିଠା ଶୁଦ୍ଧ ସୁବର୍ଣ୍ଣ ବିକଶିତ ହେଲାପରି ସାମନ୍ତବାଦୀ ସମାଜର ଏପରି ଜଣେ ଆଦର୍ଶ ପୁରୁଷ ରାମଚନ୍ଦ୍ରଙ୍କର ଆବିର୍ଭାବ ଘଟିଛି; ଯାହାଙ୍କ ସଂଗେ ତୁଳନାଯୋଗ୍ୟ ପୁରୁଷାର୍ଥ ସମଗ୍ର ଇତିହାସ ପୃଷ୍ଠାରେ ସମ୍ଭବପର ହୋଇନାହିଁ ।

ଇତିହାସର ଭାବବାଦୀ ବ୍ୟାଖ୍ୟା ଉପରେ ନିର୍ଭର କରି ରାଜକୁମାର ରାମଚନ୍ଦ୍ରଙ୍କୁ ଭଗବାନଙ୍କ ପାର୍ଥିବ ସଂସ୍କରଣରୂପେ ଯେଉଁମାନେ ପ୍ରତିପାଦନ କରନ୍ତି, ସେମାନଙ୍କର କଥା ସେଇଠି ରହିଥାଉ । କିନ୍ତୁ ବସ୍ତୁବାଦୀ ଦୃଷ୍ଟିକୋଣରୁ ଇତିହାସର ଘଟଣାବଳୀକୁ ପରୀକ୍ଷାନିରୀକ୍ଷା କରିବାର ଅଧିକାରକୁ ଯଦି ଆଜିକାର ବିଜ୍ଞାନସମ୍ମତ ଯୁଗରେ ସ୍ୱୀକୃତ ଦିଆଯାଏ, ତେବେ ଗୋଟିଏମାତ୍ର ପ୍ରଶ୍ନରେ ଏଇ ପ୍ରସଂଗର ଉପସଂହାର କରିବାକୁ ପଡ଼ିବ ଯେ ମହାକବି ବାଲ୍ମୀକି ସେ ଯୁଗରେ ରାଜନୈତିକ ସ୍ରଷ୍ଟା ଏବଂ ଉପଦେଷ୍ଟା ହୋଇ ନଥିଲେ; ଏପରି ମାନବବାଦୀ ଉଜ୍ଜ୍ୱଳ ଚରିତ୍ର ମହାକାବ୍ୟରେ ସୃଷ୍ଟି କରିପାରନ୍ତେ କି ?

ସରଳ ସାମାଜିକ କିମ୍ବା ଜଟିଳ ବୌଦ୍ଧିକ ପରିବେଶ— ଯେ କୌଣସି ଅବସ୍ଥାରେ ପ୍ରତିନିଧିତ୍ୱ କରୁଥିବା ସାହିତ୍ୟିକର ଜନମାନସ ସହିତ ନିବିଡ଼ ଅଂଗାଂଗୀ ସମ୍ପର୍କ ନଥିବା ନିରାକାର, ନିରାବଲମ୍ବୀ, ନିରପେକ୍ଷ ରଚନାର କେବେହେଲେ କୌଣସି ମୂଲ୍ୟ ଥାଇପାରେନା । ଯେଉଁ ମହାକବି ବାଲ୍ମୀକି ରାମାୟଣ ଲେଖିଛନ୍ତି, ସେ ନିଜ ହାତରେ ରାମଚନ୍ଦ୍ରଙ୍କ ଆଦର୍ଶ ଚରିତ୍ରକୁ ମଧ୍ୟ ଗଢି ତୋଳିଛନ୍ତି । ଆଭ୍ୟନ୍ତରିଣ ସମାଜ ସହିତ ଅଂଗାଂଗୀ ପରିଚୟ ସ୍ଥାପନ କରିପାରି ନଥିବା ସାହିତ୍ୟିକପକ୍ଷେ କବି ବାଲ୍ମୀକିଙ୍କ ପରି ସମାଜର ଆମୂଳ ପରିବର୍ତ୍ତନଲାଗି ନିର୍ଦ୍ଦେଶ ଦେବା କଦାପି ନିକାଳେ ସମ୍ଭବପର ନୁହେଁ ।

ଆଭ୍ୟଂତରୀଣ ସମାଜ ସହିତ ଚିଂତାଗତ ନିବିଡ଼ ସମ୍ପର୍କବୋଧରୁ ରାଜନୀତି ଜନ୍ମଲାଭ କରିଥାଏ । ବାଲ୍ମୀକିଂକ ରଚିତ ମହାକାବ୍ୟ, ସାମଂତସାହୀ ରାଜବଂଶରେ ରାମଚଂଦ୍ରଂକଭଳି ଆଦର୍ଶ ପୁରୁଷ ସୃଷ୍ଟିକରି ଇତିହାସର ତତ୍କାଳୀନ ଆବଶ୍ୟକତା ପୂରଣ କରି ନଥିଲେ, ରାମାୟଣ କାବ୍ୟ ଆଉ କି ପରିଚୟ ବଳରେ ଅନଂତକାଳଧରି ଜନସମାଜକୁ ପ୍ରଭାବିତ କରଂତା ?

ପୃଥିବୀ ଇତିହାସରେ ଯେଉଁ ପରିବେଶରେ କବି; ସାହିତ୍ୟକ ରାଜନୀତିକୁ ତରି ଅଣାକାର, ନିରାକାର, ନିରାବଲଂବୀ ଏବଂ ନିରପେକ୍ଷ ସାହିତ୍ୟର ଭ୍ରୂଣ ସଂଗଠନ କରିଂଛି ଏବଂ ମହାକବି ବାଲ୍ମୀକିଂକ ଯୁଗର ପ୍ରତିଷ୍ଠିତ ସମାଜ ସ୍ୱୀକୃତିକୁ ଗୋଡ଼ରେ ଆଡ଼େଇ ଦେଇ ଚାଲିଂଛି, ସେହି ପରିବେଶ ମଧ୍ୟରେ ସାହିତ୍ୟ ଜଗତରେ ସମସ୍ତପ୍ରକାର ମାନବିକ ସମ୍ବେଦନଶୀଳତା ଉପରେ କେବଳ ବ୍ୟକ୍ତିବାଦୀ "ସେକ୍ସ" ଏବଂ ଭାବବାଦୀ "ସ୍ପିରିଚୁଏଲିଜମ୍"ର ପ୍ରାଧାନ୍ୟ ଆରଂଭ ହୁଏ ।

ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଏବଂ ପଂଚସଖା ଯୁଗର ବହୁ ପରିବେଶରୁ ଏକଂବିଧ ଉକ୍ତିର ପ୍ରମାଣ ମିଳି ପାରିବ । ପ୍ରଶ୍ନ ହେଉଛି— କବି, ସାହିତ୍ୟକ ଏବେ ବି କଣ ସମାଜ ଚେତନାରୁ ବିମୁକ୍ତ ହୋଇ ପୁରୁଣା ସାମଂତବାଦୀ ଯୁଗର ଅଂଧାର କୋଠରୀ ଭିତରେ ମର୍ଣ୍ଣକାତର ପ୍ରାଣୀପରି ପରିବର୍ତ୍ତନଠାରୁ ଦୂରରେ ରହିବବୋଲି କୁହାଟ ଛାଡୁଥିବ ?





# ।। ସାମାଜିକ ନବ ମୂଲ୍ୟାୟନ ଓ ଓଡ଼ିଆ ସାହିତ୍ୟ ।।

ଓଡ଼ିଆ ସାହିତ୍ୟ ଏବଂ ସାଂସ୍କୃତିକ ବିଚାରଧାରାରେ ପୁରୁଣା ଗତାନୁଗତିକ ମୂଲ୍ୟବୋଧ ( ଭେଲ୍ୟୁଜ ) ପରିବର୍ତ୍ତନଲାଗି 'ସବୁଜ ଯୁଗ'ରେ କବି ଲେଖକମାନେ ହିଁ ପ୍ରଥମେ ଆଂଦୋଳନ ଆରଂଭ କରଂତି । ସେଇ ଆଂଦୋଳନକୁ ପଶ୍ଚିମ ମହାଦେଶରେ ଶିଳ୍ପ-ବିପ୍ଳବର ଘାତ ପ୍ରତିଘାତରୁ ପ୍ରବାହିତ ତରଂଗରୂପେ ଆଖ୍ୟାତ କରା ଯାଇଥାଏ । ସବୁଜ ଯୁଗର ଅନ୍ୟତମ ପ୍ରତିଷ୍ଠାବାନ କବି ଏବଂ ବଂଗଳାର ସୁପ୍ରସିଦ୍ଧ ଲେଖକ ଶ୍ରୀଯୁକ୍ତ ଅନ୍ନଦା ଶଂକର ରାୟ ତାଂକ ଦ୍ଵାରା ପ୍ରକାଶିତ ଆଲୋଚନା ଗ୍ରଂଥରେ ସେ ସମୟର ବସ୍ତୁନିଷ୍ଠ ଚିତ୍ର ଏବଂବୋଧ ବ୍ୟାଖ୍ୟାକରି ରକ୍ଷଣଶୀଳ ସମାଜକୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଛଂତି । ତାଂକର ପ୍ରଶ୍ନ ହେଲା— ଇଉରୋପୀୟ ବୈଜ୍ଞାନିକ ଉଦ୍‌ଭାବନକୁ ଯେଉଁମାନେ ସ୍ୱାଗତ କରିଚ, ସେମାନେ ପୁଣି ତହିଁରୁ ଉତ୍ପନ୍ନ ହୋଇଥିବା ମୂଲ୍ୟବୋଧ (ଭେଲ୍ୟୁଜ) ପ୍ରତ୍ୟାଖ୍ୟାନ କରିବ କାହିଁକି ? ବିଜୁଳି ବତି ଜାଳିବ ଅଥଚ ବ୍ୟକ୍ତି ସ୍ୱାଧୀନତାକୁ ଗ୍ରହଣ କରି ପାରିବନାହିଁ ? ରେଳଗାଡ଼ିରେ ବସିବ, ସ୍ତ୍ରୀ ସ୍ୱାଧୀନତାକୁ ଅସ୍ୱୀକାର କରୁଥିବ ? ଲୁହା କାରଖାନା ଆଣିବ, ଅଥଚ ସବୁ ମଣିଷଂକର ସମାନ ଅଧିକାରକୁ ସ୍ୱାଗତ କରି ପାରିବ ନାହିଁ ?

ଓଡ଼ିଆ ସାହିତ୍ୟରେ ପ୍ରଥମ ମହାଯୁଦ୍ଧର ସମକାଳୀନ ବା ପରବର୍ତ୍ତୀ ଯେଉଁ ଅବଧିକୁ 'ସବୁଜ ଯୁଗ' କୁହାଯାଏ, ତାହା ଆଜିକି ପ୍ରାୟ ପଚାଶବର୍ଷ ତଳର ଘଟଣା । ସବୁଜ ଯୁଗର ଅନେକ କବି ଓ ଲେଖକଗଣ କାଳର ପ୍ରବାହରେ ନିଷ୍ପ୍ରଭ ହୋଇଗଲେଣି । ସେମାନେ ଯେଉଁ ମୂଲ୍ୟବୋଧର ପ୍ରତିଷ୍ଠାଲାଗି ସଂଗ୍ରାମ କରି ଦିନେ ନବୀନତାର ପରିଚୟ ଦେଇଥିଲେ, ଆଜି ପୁଣି ସେଇ ନବୀନତ୍ୱର ପ୍ରାଣ-ପ୍ରତିଷ୍ଠା ଲାଗି ସଂଗ୍ରାମ କରୁଥିବା ତରୁଣ ଲେଖକଙ୍କ ଦୃଷ୍ଟିରେ ସେମାନେ ପୁରାତନ ଏବଂ ରୂଢ଼ୀବାଦୀ । ଏଇ ଗୋଟିଏ ଘଟଣାରୁ ପ୍ରମାଣିତ ହୋଇଯାଉଛି ଯେ, ସମାଜ ଭିତରେ ନୂତନ ଚିନ୍ତାର ମୂଲ୍ୟାୟନଲାଗି ସଂଗ୍ରାମ ତତ୍ପରତାକୁ ଆମେ ଜୀବନର ଗୋଟାଏ ସମୟ, ଅବସ୍ଥା ଏବଂ ପରିସରର ସ୍ୱୀକୃତି ରୂପେ ଗ୍ରହଣ କରୁଥାଉଁ ।

ମଣିଷ ସମାଜରେ କେବେ କେଉଁଠାରେ ହେଲେ ପୁରୁଣା ଗତାନୁଗତିକ ମୂଲ୍ୟବୋଧ ପାଂଚ ଦଶବର୍ଷର ଆଂଦୋଳନ ମଧ୍ୟରେ ବଦଳିଯାଏ ନାହିଁ । ଏହା ସିଦ୍ଧ ହୋଇଥାଂତା, ତ୍ରିଦଶକ ତଳର ସବୁଜ ଯୁଗ ଏବଂ ତତ୍ପରବର୍ତ୍ତୀ ପ୍ରଗତିଶୀଳ ଯୁଗ ପରେ ଆଜି ହୁଏତ ଆମକୁ ଆଉ ନୂଆ କିଛି ମୂଲ୍ୟବୋଧର ପ୍ରତିଷ୍ଠାଲାଗି ସଂଗ୍ରାମ କରିବାକୁ ପଡ଼ିଂତାନାହିଁ ।

ପୃଥିବୀର ଚିଂତା ଜଗତରେ ସମୟାନୁକୂଳ ମୂଲ୍ୟବୋଧର ପ୍ରତିଷ୍ଠାଲାଗି ଯେଉଁମାନେ ସଂଗ୍ରାମ କରଂତି ସେମାନଂକର ସ୍ୱୀକୃତି ସବୁବେଳେ ବିଭିନ୍ନ ଅବସରରେ ନୂଆନୂଆ ଆହ୍ୱାନର ସମ୍ମୁଖୀନ ହୋଇଥାଏ । ଆଧୁନିକ ସମାଜରେ ନବନବ ବୈଜ୍ଞାନିକ ଉଦ୍‌ଭାବନ ଫଳରେ ଆଜିର ସ୍ୱୀକୃତି କାଲିକି ବିପର୍ଯ୍ୟସ୍ତ ହୋଇଯାଉଛି । ଷ୍ଟି-ଫେନ୍ସନ୍‌ଙ୍କର ବାଷ୍ପ-ଶକ୍ତିରୁ ରେଲ ଇଂଜିନ୍ ଜନ୍ମ ହେଲେ ମଧ୍ୟ ଆଜିକାର ବିଦ୍ୟୁତ୍‌ଚାଳିତ ରେଲଗାଡ଼ିକୁ ଦେଖିଲେ କୋଇଲା ପୋଡ଼ା ପୁରୁଣା ଇଂଜିନକୁ ସେଇ ରେଲଗାଡ଼ିର ପୂର୍ବ ବଂଶଧର ହିସାବରେ କିଏସେ କାହିଁକି ସମ୍ମାନ ଦେବାକୁ ଚାହିଁବ ? ସେଇପରି ଇଲେକ୍‌ଟ୍ରନିକ୍ କଂପ୍ୟୁଟର ଯୁଗରେ ମଣିଷ ଜାତିର ସାଧାରଣ ଚିନ୍ତାଶକ୍ତିର ପୂର୍ବ ସ୍ୱୀକୃତି ଆଉ ଅଟଳ ରହିପାରିଲା ନାହିଁ । ପ୍ରତି ମୁହୂର୍ତ୍ତରେ ବିଜ୍ଞାନର ଉଦ୍‌ଭାବନ ଶକ୍ତି ବିଗତକାଲିକୁ ପଛରେ ପକାଇ ଅଗ୍ରସର ହେବାରେ ଲାଗିଛି । ସେଇ ଦୃଷ୍ଟିରୁ ବିଚାର କରି ଦେଖିଲେ, ବିଗତ-କାଲି ଅପେକ୍ଷା ସଦ୍ୟ ଆଗତ ବର୍ତ୍ତମାନର ନିକଟତର ସମୟହିଁ ସର୍ବାପେକ୍ଷା ଅଧିକ ପରୀକ୍ଷାନିରୀକ୍ଷାର ସମ୍ମୁଖୀନ ।

ଯେତେବେଳେ ପୃଥିବୀରେ ବିଜୁଳିବତୀ ନଥିଲା, ସେତେବେଳେ ମଣିଷ ହାତରେ ଯେଉଁ ଆଲୁଅ ଧରୁଥିଲା, ସେ ଆଲୁଅର ପରୀକ୍ଷାନିରୀକ୍ଷା ପାଇଁ ବର୍ତ୍ତମାନ

କୌଣସି ଆବଶ୍ୟକତା ମଧ୍ୟ ଉଠୁନାହିଁ । ବର୍ତ୍ତମାନର ପରୀକ୍ଷାଟା କେବଳ ବଳୁଛି ବଞ୍ଚା ଏବଂ ତତ୍ପରବର୍ତ୍ତୀ ଅବସ୍ଥା ଉପରେ ସୀମାବଦ୍ଧ । ସେଇହେତୁ ପୃଥିବୀର ଚିଂତା ଜଗତରେ ସବୁଠାରୁ ଜନକଷ୍ଟତମ ବ୍ୟକ୍ତିହିଁ ସବୁବେଳେ ଅଧିକରୁ ଅଧିକ ଆକ୍ରମଣର ସମ୍ମୁଖୀନ ହୋଇଥାଏ ।

ତ୍ରିଂଶବର୍ଷତଳେ ଓଡ଼ିଆ ସାହିତ୍ୟରେ ଯେତେବେଳେ 'ସବୁଜ ଯୁଗ'ର ଅଭ୍ୟୁଦୟ ଘଟିଲା, ସେତେବେଳେ ଆମରି ପୂର୍ବଜମାନେ ଜରୋଳା କୃଷି-ପ୍ରଧାନ ସମାଜ ଭିତରେ ଥାଇ ଆଜିକାର ପରିବର୍ତ୍ତନର ଇଂଗିତକୁ ବୁଝିବା ସହଜକଥା ନୁହେଁ । ସେଇହେତୁ ସେ କାଳର ପ୍ରଗତିଶୀଳ ଆଭିମୁଖ୍ୟ କେବଳ କେତେକ ସ୍ଥୂଳ ମୂଲ୍ୟବୋଧ ଏବଂ ଅଭିଜ୍ଞତାବିହୀନ ସଂସ୍କାରମୁଖୀ ଚେତନାରେ ସୀମାବଦ୍ଧ ରହିଥିଲା । ସେକାଳରେ ସ୍ୱାଧୀନତାଲାଗି ସ୍ୱର ଉତ୍ତୋଳନ କରିବା ହେଲା ସବୁ-ଠାରୁ ବଳି ପ୍ରଗତିଶୀଳ କର୍ମ । ଧର୍ମରେ ସଂସ୍କାର, ସମାଜରେ ଏକତା, ବ୍ୟକ୍ତିର ସମାନତା— ଏସବୁହେଲେ ସେ ଯୁଗର ଆଦର୍ଶବାଣୀ ।

କିଂତୁ ଧର୍ମଟା କଣ ଏବଂ ସେଥିରେ ସଂସ୍କାରର କି ଆବଶ୍ୟକତା ରହିଛି, ସମାଜରେ ଏକତା କେଉଁଠାରେ କପର ଅଭିଶପ୍ତା ଅହଲ୍ୟା ପଥର ହୋଇ ପଡ଼ିରହିଛି ଏବଂ ଆମେ ଯେଉଁ ସମାନତାଲାଗି ଚିତ୍କାର କରୁଛୁ, ସେ ସମାନତାର ବାସ୍ତବ ଭିତ୍ତିଭୂମି କଣ, ସେସବୁ ପ୍ରଶ୍ନଗୁଡ଼ିକ ସେତେବେଳେ ସଂସ୍କାରମୁଖୀ ଆଭିମୁଖ୍ୟ ମଧ୍ୟରେ କେବଳ ରେଖାଂକିତ ହୋଇ ରହିଯାଉଥିଲେ । ସେହି ଆଭିମୁଖ୍ୟ ଗୁଡ଼ିକ ସମାଜର ବାସ୍ତବ ପଟ୍ଟଭୂମି ଉପରେ ପ୍ରତିଫଳିତ ହେବାଲାଗି ଦୀର୍ଘ ପଚିଶବର୍ଷ ବିତିଗଲାଣି । କିଂତୁ ତାହା ଏପର୍ଯ୍ୟଂତ ବି ପୂର୍ଣ୍ଣାଂଗ ହୋଇନାହିଁ । ଆଜି ବି ବିଜୁଳି ଆଲୁଅ ପାଖରେ ବ୍ୟକ୍ତି ସ୍ୱାଧୀନତା ସଦଂଭେ ମସ୍ତକ ଉତ୍ତୋଳନ କରି ଠିଆହୋଇ ପାରୁନାହିଁ । ପୃଥିବୀର ଯେଉଁ ପାଖରେ ସୂର୍ଯ୍ୟର ଆଲୋକ ପଡୁଛି, ସେଇ ପାଖରେ ଦିବସ ଏବଂ ଅନ୍ୟ ପାଖରେ ରାତି ହେଲାଭଳି, ଗୋଟିଏ ପାଖରେ କଳପାଣି ଓ ବ୍ୟକ୍ତିସ୍ୱାଧୀନତାର ସହାବସ୍ଥାନ ସଂଭବ ହେଲାବେଳକୁ ଅନ୍ୟଆଡ଼େ ସବର୍ଣ୍ଣଂକ କୂଅରୁ ପାଣି ଟେକିନେଇ ନେଉଥିବା ହରିଜନ ବାଳକଂକୁ ଜୀଅଂତା ପୋଡ଼ି ଦିଆଯାଉଛି !

ଭାରତର ସାମାଜିକ ଜୀବନର ଆଜି ଏହାହିଁ ଅବସ୍ଥା । ଆଜି ଭାରତ ସ୍ୱାଧୀନ ହୋଇଛି ସତ, କିଂତୁ ସେଇ ସ୍ୱାଧୀନତା ଭିତ୍ତିରେ ସାମାଜିକ ମୂଲ୍ୟ-

ବୋଧର କି ପରିବର୍ତ୍ତନ ଘଟିଛି ? ଆଜି କଳପାଣି ପାଖରେ ବ୍ୟକ୍ତି ସ୍ୱାଧୀନତା ଆସିଗଲାଣି ସିନା, କିନ୍ତୁ ବିଜୁଳି ଆଲୁଅ ପାଖରେ ବ୍ୟକ୍ତି ସ୍ୱାଧୀନତା କେଉଁଠି ରହୁଛି ? ଆଜି ରେଳଗାଡ଼ିରେ ସ୍ତ୍ରୀ ସ୍ୱାଧୀନତା ଆସିଗଲାଣି ସତ, କିନ୍ତୁ ସେ ସ୍ୱାଧୀନତା କଣ ପ୍ରଥମ ଶ୍ରେଣୀ ଓ ତୃତୀୟ ଶ୍ରେଣୀ ଡ଼ବାକୁ ଦେଖିଲେ ଫରକ ଜଣାଯାଉନାହିଁ ? ଆଜି ଦେଶର କଳକାରଖାନାକୁ ଅନାଇଲେ ଏଠି କଣ ସାଧାରଣ ମଣିଷଙ୍କର ଅବସ୍ଥା ପରିବର୍ତ୍ତନର ଉଦ୍ଦେଶ୍ୟରେ ବା ଦେଶର ସାମୂହିକ ଅବସ୍ଥାର ପରିବର୍ତ୍ତନଲାଗି କିଛି କାମ ହେଉଛିବୋଲି କେହି ବିଶ୍ୱାସ କରିବ ? ସମାଜ ଭିତରେ ମୂଲ୍ୟବୋଧର ପରିବର୍ତ୍ତନଲାଗି ଯେଉଁ ବ୍ୟାକୁଳତା ଚିନ୍ତାଶୀଳ ଲୋକଙ୍କର ମନ ଭିତରଟାକୁ ପଚିଶବର୍ଷ ତଳେ ଆନ୍ଦୋଳିତ କରୁଥିଲା, ଆଜି କଣ ତାର ଅବସାନ ହେଲାଣି ?

ଅବସାନ ହେବ କିପରି ତାହାହିଁ ବର୍ତ୍ତମାନର ପ୍ରଶ୍ନ । ଏ ପ୍ରଶ୍ନର ସମାଧାନ ଦୁଇଟି ଶକ୍ତିର ସହଯୋଗ ଉପରେ ଆଧାରିତ । ପ୍ରଥମ ଶକ୍ତି ବିଜ୍ଞାନ ଏବଂ ଅପର ଶକ୍ତି ମନୁଷ୍ୟ ନିଜେ । ବିଜ୍ଞାନ ଓ ମନୁଷ୍ୟ ଉଭୟଙ୍କର ସହଯୋଗରେ ଏହାର ପରିବର୍ତ୍ତନ ସମ୍ଭବ । କିନ୍ତୁ ଏହି ସହଯୋଗ ସ୍ଥାପନପାଇଁ ଅନୁକୂଳ ଅବସ୍ଥା ବର୍ତ୍ତମାନଯାଏ ଆସିନାହିଁ । ଏବେ ମଧ୍ୟ ବିଜ୍ଞାନ ଏପରି ଲୋକଙ୍କ ହାତମୁଠାରେ ଆବଦ୍ଧ, ଯେଉଁମାନେ ବିଜ୍ଞାନର ସମ୍ଭାବିତ ମୂଲ୍ୟବୋଧକୁ ନିଜ ରୁଚି ଅନୁଯାୟୀ ନିୟନ୍ତ୍ରଣ କରନ୍ତି । ସେଇହେତୁ ବାସ୍ତବ କ୍ଷେତ୍ରରେ ବିଜ୍ଞାନର କାର୍ଯ୍ୟକାରିତା ଯେତିକି ଦୂର ଅଗ୍ରସରିତ ହୋଇପାରିଛି, ମାନସିକ କ୍ଷେତ୍ରରେ ତାହା ସେତିକିଦୂର ପ୍ରଭାବଶାଳୀ ହୋଇ ପାରିନାହିଁ । ଏହାର ପରିଣାମରେ ବିକଶିତ ମୂଲ୍ୟବୋଧ ସଙ୍କୁଚିତ ହୋଇ ରହୁଛି ।

ସମ୍ବାଦ ବାହାରିଲାଯେ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଡ଼କ୍ଟର ତ୍ରିଗୁଣା ସେନଙ୍କ ହାତରୁ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଶିକ୍ଷା ବିଭାଗ କାଢ଼ିନେଇ ତାଙ୍କୁ ପେଟ୍ରୋଲ ଓ ରସାୟନିକ ବିଭାଗର ଦାୟିତ୍ୱ ଦେବାକୁ ଇଚ୍ଛାପ୍ରକାଶ କଲାବେଳେ, ଶିକ୍ଷାମନ୍ତ୍ରୀ ମଦର ଆନନ୍ଦମୟୀଙ୍କ ଆଶୀର୍ବାଦ ଭିକ୍ଷା କରିବାପାଇଁ ବାହାରିଲେ । ତା'ପରେ ମଦର ଆନନ୍ଦମୟୀ ତାଙ୍କୁ ସେଇ ବିଭାଗର ଦାୟିତ୍ୱ ବହନ କରିବା-ଲାଗି ଆଶୀର୍ବାଦ କରିବାରୁ ସେ ପ୍ରଧାନମନ୍ତ୍ରୀଙ୍କୁ ସମ୍ମତି ଜଣାଇଲେ।

ଶ୍ରୀଯୁକ୍ତ ତ୍ରିଗୁଣା ସେନ କେମିକାଲ ଇଞ୍ଜିନିୟରିଂ ବିଦ୍ୟାରେ ଡକ୍ଟରେଟପ୍ରାପ୍ତ ଭାରତର ଜଣେ ବିଶିଷ୍ଟ ବୈଜ୍ଞାନିକ । ତାଙ୍କଠାରୁ ସାଧାରଣ

ଶିକ୍ଷା ବିଭାଗ କାଢିନେଇ କେମିକାଲ ବିଭାଗର ଦାୟିତ୍ୱ ଦେବାଦ୍ୱାରା, ତାଙ୍କପରି ଜଣେ ବହୁଦର୍ଶୀ ବ୍ୟକ୍ତିଙ୍କର ଆଜୀବନ ଉପାର୍ଜିତ ଜ୍ଞାନ ସମ୍ଭାର ଅଧିକ ଉପଯୋଗ କରାଯାଇ ପାରିବ । ଶ୍ରୀଯୁକ୍ତ ସେନ ନିଜେ ଜଣେ ବୈଜ୍ଞାନିକ ହିସାବରେ ମଦର ଆନନ୍ଦମୟୀ କିମ୍ବା ମଦର ପଂଡ଼ିଚେରୀଙ୍କ ଆଶୀର୍ବାଦ ଭିକ୍ଷା କରିବା ବ୍ୟକ୍ତିଗତ ଅଭିରୁଚି ହୋଇପାରେ, କିନ୍ତୁ ବ୍ୟକ୍ତିଗତ ଅଭିରୁଚିକୁ କଣ ଆଜିଯାଏ ବିଜ୍ଞାନ ପ୍ରଭାବିତ କରିପାରିଲା ନାହିଁ ? ବିଜ୍ଞାନର ବିକାଶ ଫଳରେ ପୁରୁଣା ମୂଲ୍ୟବୋଧର କଣ ଅଳ୍ପ ଏତିକି ପରିବର୍ତ୍ତନ ଘଟିପାରିଲା ନାହିଁଯେ, ଜଣେ ବୈଜ୍ଞାନିକ ଓ ସାଧାରଣ ମଣିଷର କ୍ରିୟାକଳାପ ମଧ୍ୟରେ କିଛି ପାର୍ଥକ୍ୟ ରହିପାରିବ ? କିନ୍ତୁ ଦୁଃଖର କଥା ଯେ ଭାରତର ବିଜ୍ଞାନ ଆଜିଯାଏ ବି ମଣିଷର ବିଚାରବୁଦ୍ଧିକୁ ଉନ୍ନତ ରୂପେ ବିକଶିତ କରି ପାରିଲାନାହିଁ । ଏଠି ବୈଜ୍ଞାନିକଗଣ ନିଜ ହାତରେ ତାବିଜ ବାନ୍ଧୁଛନ୍ତି ଏବଂ ଚାକିରିର ପଦୋନ୍ନତି ବା ସୁରକ୍ଷାଲାଗି ମଦର ଆନନ୍ଦମୟୀ ଓ ମଦର ପଂଡ଼ିଚେରୀଙ୍କ ପ୍ରତିକୃତି ଉପରେ ଫୁଲ ଚନ୍ଦନ ଚଢ଼ାଇବାରେ ଲାଗିଛନ୍ତି ।

ଭାରତରେ ଆଜି ସମସ୍ତ ବୁଦ୍ଧିଜୀବୀଙ୍କ ଜୀବନର ବିକଶିତ ଶତଦଳକୁ ସୁରକ୍ଷାର ସୂର୍ଯ୍ୟ ସମାନରୂପେ ପ୍ରସ୍ଫୁଟିତ କରିପାରୁ ନାହାନ୍ତି । ସମାଜରେ ସୁରକ୍ଷା ନାହିଁ କିମ୍ବା ନ୍ୟାୟ ବିଚାର ମଧ୍ୟ ନାହିଁ । ସାମାଜିକ ସୁରକ୍ଷା ନଥିଲେ ସାଧାରଣ ମଣିଷ ଜୀବନରେ ଆତ୍ମକେନ୍ଦ୍ରିକ ମନୋବୃତ୍ତି ବଢିଯାଏ । ଆତ୍ମକେନ୍ଦ୍ରିକ ମନୋବୃତ୍ତି ବଢିଗଲେ ମଣିଷ ମଣିଷ ଭିତରେ ନ୍ୟାୟ ଚେତନାର ପଥ ଅବରୁଦ୍ଧ ହୋଇଯାଏ । ନ୍ୟାୟ ଚେତନାର ପଥ ଅବରୁଦ୍ଧ ହୋଇଗଲେ ବ୍ୟକ୍ତି ସ୍ୱାଧୀନତାର କଥାକୁ ଆଉ କେହି ବିଚାରକୁ ସୁଦ୍ଧା ଆଣନ୍ତି ନାହିଁ । ସେତିକିବେଳେ ପୃଥିବୀରେ ସୂର୍ଯ୍ୟଥାଇ ମଧ୍ୟ ଅନ୍ଧକାର ଘୋଟିଆସେ, ବିଜ୍ଞାନ ଥାଇ ମଧ୍ୟ ଲୋକେ ଅବୈଜ୍ଞାନିକଭଳି କାର୍ଯ୍ୟ କରନ୍ତି । ବିଜ୍ଞାନ କେବଳ ଶିକ୍ଷାଗତ ଯୋଗ୍ୟତା ମଧ୍ୟରେ ସୀମାବଦ୍ଧ ରହିଯାଏ ।

ସମାଜ ଭିତରେ ଏହାହିଁ ଚିନ୍ତାଗତ ସଙ୍କଟର କାଳ ଏବଂ ଏଇପରି ଅବସ୍ଥା ଅବକ୍ଷୟ ଏବଂ ହତାଶାବାଦର ମୂହୂର୍ତ୍ତକୁ ଆହୁରି ତ୍ୱରାନ୍ୱିତ କରିପକାଏ । ମନେ ହେଉଛି ମଣିଷର ଚେତନା ଜଗତରେ ଆଜିକାର ଏଇ ସଙ୍କଟଜନକ ଅବସ୍ଥାକୁ ବୁଦ୍ଧିଜୀବୀଗଣ ଏପର୍ଯ୍ୟନ୍ତ ବିଶ୍ଳେଷଣ କରି ପାରିନାହାନ୍ତି । ଏହାରି ଫଳରେ ଆମେ ସମାଜର ପ୍ରଚଳିତ ମୂଲ୍ୟବୋଧକୁ ପରିବର୍ତ୍ତନ ନକରି ମଧ୍ୟ

ଆଧୁନିକତାର ସ୍ଲୋଗାନ ବାଢ଼ୁଛୁ । କବି ଇଲିୟଟ୍‌ଙ୍କ କବିତା ପଢ଼ି ମଧ୍ୟ ସମାଜର ବାସ୍ତବ ଅବସ୍ଥା ବିଶ୍ଳେଷଣ କରି ପାରୁନାହୁଁ । ଆମର ସାମାଜିକ ଚେତନା ଅଭାବରୁ ଆମେ ସୁପରମେଣ୍ଟାଲ ପାୱାର ବା ଅତିବୌଦ୍ଧିକ ଚେତନାର ଶରଣଗାମୀ ହେଉଛୁ ।

ସେଇଥିରୁ ଆମର କବିତା ଏବଂ ବାସ୍ତବତା ମଧ୍ୟରେ ବ୍ୟବଧାନ ବୃଦ୍ଧି ପାଇବାରେ ଲାଗିଛି । ଆମର ପ୍ରଚାରିତ ଆଦର୍ଶ ଏବଂ ବାସ୍ତବ ପରିସ୍ଥିତି ମଧ୍ୟରେ କୌଣସି ଯୋଗାଯୋଗ ସ୍ଥାପନ ହୋଇ ପାରୁନାହିଁ । ଆମର ଜୀବନ ଓ କାର୍ଯ୍ୟ-କଳାପ ଖୁବ୍ ଖାପଛଡ଼ା ଏବଂ ବାଁ-ଡାଳିଆ ହୋଇଯାଉଛନ୍ତି । ଏପରି ଅବସ୍ଥାରେ ଆମର ଅନୁସୃତ ମୂଲ୍ୟବୋଧ ଆଧୁନିକତାର ବାସ୍ତବ ପ୍ରତିବିଂବ ସୃଷ୍ଟି କରୁଛିବୋଲି କେଉଁ ଦଂଭରେ ଦାବୀ କରିପାରିବା ?





## ॥ ସାହିତ୍ୟିକ ଆଚରଣ ॥

ଅଭିନୟର ରାମଚନ୍ଦ୍ର ବାସ୍ତବ ଜୀବନରେ ପିତୃଭକ୍ତ କିମ୍ବା ଭ୍ରାତୃ-ବତ୍ସଳ ନଥାନ୍ତି । ମୁହଁରେ ମୁଖାପିନ୍ଧି ବାହାରୁଥିବା ଦଶାନନ କେବଳ ସ୍ଟେଜ ଭିତରେ ସୀତା ହରଣ କରନ୍ତି ।

ଅଭିନେତା ଜୀବନର ଛଳନାପୂର୍ଣ୍ଣ ଅଭିମୁଖ୍ୟ କଳାନାମରେ ଆଦୃତ । କୃତ୍ରିମତା ମାଧ୍ୟମରେ ବାସ୍ତବତାର ସଫଳ ବିନ୍ୟାସ ହିଁ ଅଭିନୟ କଳାର ଚରମ ସାର୍ଥକତା । ଅଭିନେତା ଅଭିନେତ୍ରୀଙ୍କର ବ୍ୟକ୍ତିଗତ ଜୀବନ-ସମ୍ପର୍କ ସହିତ ଅଭିନୀତ ଚରିତ୍ର-ଚରିତ୍ରର କୌଣସି ଯୋଗାଯୋଗ ନଥାଏ । ସେମାନେ ରଙ୍ଗ-ମଞ୍ଚରେ ଯାହା ପରିବେଷଣ କରନ୍ତି ତାକୁ କେବଳ ମାତ୍ର ଅଭିନୟ ବୋଲି ଧରିନେବାକୁ ପଡ଼ିବ । ବ୍ୟକ୍ତିଗତ ଜୀବନ-ସମ୍ପର୍କ ଏବଂ ଭାବାବେଗ ଅଭିନୟ ମାଧ୍ୟମରେ ପ୍ରଦର୍ଶିତ ହେଲେ, ତାହା କଳା ସୃଷ୍ଟିର ମର୍ଯ୍ୟାଦା ନଷ୍ଟ କରିଥାଏ ।

ମଞ୍ଚ ଅଭିନେତା ର କଳାକାର ଜୀବନ ଏବଂ ବ୍ୟକ୍ତିଗତ ବାସ୍ତବ ଜୀବନର ସୀମାରେଖାକୁ ଯେଉଁମାନେ ବୁଝିଛନ୍ତି, ସେମାନେ ଏକଥା ଭଲଭାବେ ଜାଣିଛନ୍ତି ଯେ କଳାକାର ରଂଗମଂଚରେ ଯେଉଁ ଛଳନା ପ୍ରଦର୍ଶନ କରେ, ତାହା ନିଜର ପାରିପାର୍ଶ୍ୱିକ ଜୀବନରେ କେବେହେଲେ ବ୍ୟବହାରକୁ ଆଣିପାରିବ ନାହିଁ । ମଂଚ ଉପରେ ଡ୍ରପ୍‌ସିନ୍ ଟଣାହେବା ସଙ୍ଗେସଙ୍ଗେ ଅଭିନେତାର କୃତ୍ରିମ ରୂପ ଚରିତ୍ର ପରଦା ଗୁଡ଼ିକର ଉହ୍ଲାଳରେ ନେପଥ୍ୟକୁ ଚାଲିଯାଏ । ତା'ପରେ ମେକ୍-ଅପ୍ ଟେବୁଲ ଆଇନା ସାମନାରେ ମୁହଁ ଉପରୁ ପାଉଡ଼ରର ପ୍ରଲେପ ପୋଛିଦେଇ ସେ ତାର ବାସ୍ତବ ଜୀବନକୁ ଫେରିଆସେ । ସେଠି ପତ୍ନୀପୁତ୍ର, ପିତାମାତା, ଭ୍ରାତା ଭଗିନୀଂକ ପାଖରେ ବାସ୍ତବ ଜୀବନର କର୍କଶ ଅନୁଭୂତ ଯେତେ ତିକ୍ତ ଏବଂ ଅବସାଦମୟ ହୋଇଥାଉନା କାହିଁକି, ଛଳନାକ୍ରମୀ କଳାକାର ସେଥିରୁ ବିମୁଖ ହୋଇ ଅନ୍ୟଆଡେ ପଳାଇ ଯିବାର ଉପାୟ ନାହିଁ । ରିକ୍ତ ବାସ୍ତବତାକୁ ମୁକାବିଲା କରିବାଲାଗି ଅସାମର୍ଥ୍ୟ ଦେଖାଇଲେ କଳାକାରର ସାଧନାମୟ ଜୀବନପଥ ଦ୍ୱିଧା-ବିଖଂଡିତ ହୋଇ କଳା ପ୍ରତିଭାର ଅପମୃତ୍ୟୁ ଘଟେ ।

ସମାଜ ସୃଷ୍ଟିରେ ଏପରି ଉଚ୍ଚ ସ୍ୱୀକୃତିପ୍ରାପ୍ତ ଏବଂ ମହନୀୟ ପେଶା ମାଧ୍ୟମରେ ଛଳନା ଏବଂ କୃତ୍ରିମତା ପ୍ରଦର୍ଶନଲାଗି ଅବାଧ ଅଧିକାର ପାଉଥିବା ମଂଚ ଅଭିନେତାର ବାସ୍ତବ ଜୀବନର ବିଧି ନିଷେଧ ଦେଖିଲେ ମନେହୁଏ ଯେ, ମଣିଷ ଜୀବନ ଉପରେ ପ୍ରଭାବ ବିସ୍ତାର କରିଥିବା କଳା ଏବଂ ସୌଂଦର୍ଯ୍ୟାନୁଭୂତିରେ ଛଳନା, କୃତ୍ରିମତା ତଥା ଆତ୍ମ-ପ୍ରତାରଣାର ସୀମାରେଖା କେବଳ ଅଭିନୟ ମଧ୍ୟରେହିଁ ସୀମାବଦ୍ଧ ରହିଯାଇଛି । ତାହାଛଡ଼ା ଆଉ ଅନ୍ୟ କୌଣସି ଜୀବନ ଦର୍ଶନରେ କୃତ୍ରିମତା ଶୋଭା ପାଏନାହିଁ ।

କିଂତୁ ଆଦର୍ଶଗତ ଦୃଷ୍ଟିକୋଣରୁ ଏହାହିଁ ସର୍ବମାନ୍ୟ ସିଦ୍ଧାଂତ ହେଲେ ମଧ୍ୟ, ଆଧୁନିକ କାଳର ବ୍ୟବହାରିକ ଜୀବନ ଦର୍ଶନର ଆଭିମୁଖ୍ୟ— ସାହିତ୍ୟ, ସଂସ୍କୃତି ତଥା ରାଜନୀତିକ ଆବେଷ୍ଟନୀ ମଧ୍ୟରେ ଅନେକ କିଛି ବିପରୀତମୁଖୀ ପ୍ରଭାବ କାର୍ଯ୍ୟ କରୁଥିବା ଦେଖିବାକୁ ମିଳୁଛି । ଆଧୁନିକ କାଳର ଜୀବନ ଦର୍ଶନ ଉପରେ ପେଷାଦାରୀ ରାଜନୀତିର ଅଧିକ ପ୍ରଭାବ ପଡ଼ିସାରିଛି ବୋଲି ସ୍ୱୀକାର କରିନେବାକୁ ପଡ଼ିବ । କଳା, ସାହିତ୍ୟ ଓ ସଂସ୍କୃତିର ପ୍ରଭାବ ଜୀବନଦର୍ଶନରେ ଗୌଣ ହୋଇ ଯାଇଛି । ପୂର୍ବକାଳରେ ଧର୍ମକୁ ଜୀବନ-ଦର୍ଶନର ଆଇନା କୁହାଯାଉ ଥିଲା । କିଂତୁ ସେ ପୁରୁଣା ଆଇନାର ସ୍ୱଚ୍ଛତା ନଷ୍ଟ ହୋଇଯିବା ଫଳରେ ସେଥିରେ ମଣିଷର ଚେହେରା ଅତିମାତ୍ରାରେ ବିକୃତ ଦେଖାଗଲାଣି । ସେଇ ସ୍ଥାନରେ

ପେଷାଦାରୀ ରାଜନୀତି, ବେଲଜିୟମ କାଚ ଝଂଜା ସଫାଡୋଫା ଆଇନା ରଖି ଭାରତୀୟ ଜୀବନ ଦର୍ଶନର ପ୍ରତିବିଂବ ଉତାରିବାକୁ ଚେଷ୍ଟା କରୁଚ ।

ଆଧୁନିକ ଅର୍ଥରେ ଭାରତକୁ ରାଜନୀତି ଆସିଚ ପଶ୍ଚିମ ମହାଦେଶରୁ । ସେଇସବୁ ଦେଶରେ ଯେଉଁମାନେ ଲର୍ଡ ପରିବାରରେ ଜନ୍ମ ହୋଇଥାଂତି ସେଇ ମାନଂକର ରାଜନୀତି ଚଳେ । ସେଇମାନେ ଲର୍ଡ ତଥା ବିତ୍ତଶାଳୀ ପରିବାରର ସ୍ୱାର୍ଥରକ୍ଷା ପାଇଁ ବିନା ଦ୍ୱିଧାରେ ଯେଉଁ ରାଜନୀତି କରଂତି, ଇତିହାସରେ ତାକୁ ପୁଂଜିବାଦୀ ରାଜନୀତି କୁହାଯାଏ । କିଂତୁ ଭାରତୀୟ ରାଜନୀତି ଆଉ ଏକପ୍ରକାରେ । ଏଇ ରାଜନୀତିର ବିଚିତ୍ର ବିଡ଼ଂବନା ହେଉଚି, ଏଠି ଲର୍ଡଂକ ସାଥିରେ ଜମିନ୍ଦାର ଏବଂ ପ୍ରୋଲେଟେରିଏଟ ମିଳିମିଶି କେବଳ ମାତ୍ର ଲର୍ଡ ପରିବାରପାଇଁ ଉର୍ଦ୍ଧ୍ୱ ପୁଂଜିବାଦୀ ରାଜନୀତି କରଂତି ଏବଂ କେଉଁଠି କେଉଁଠି ଲର୍ଡ, ବ୍ୟାରେନ, ଶୋଷକ ତଥା ଭିକ୍ଷାଜୀବୀ ଏକାଠି ମିଳିତହୋଇ ସର୍ବହରା ରାଜନୀତି କଥା ମଧ୍ୟ କହଂତି । ସେଇହେତୁ ଏ ଦେଶରେ ରାଜନୀତିକୁ ବି ଗୋଟାଏ ପ୍ରକାର ଅଭିନୟ ବା ଯାତ୍ରାଅଂଗ କୁହାଯାଏ । ଏ ଦେଶରେ ରାଜନୈତିକ ନେତା ଏବଂ ମଂଚ ଅଭିନେତାଂକ ମଧ୍ୟରେ ସେଇ କାରଣରୁ ଅନେକ ସମୟରେ କୌଣସି ପାର୍ଥକ୍ୟ ସୃଷ୍ଟି ହୁଏନାହିଁ ।

ଏହାପରେ ସାହିତ୍ୟ ଓ ସଂସ୍କୃତିର କଥା ବିଚାରକୁ ଆସିବା । ସାହିତ୍ୟିକ ଅଭିନେତା କିଂବା ପାଦ୍ରୀ ନୁହଂତି । ପାଦ୍ରୀ ଯାହା କହେ ସେ ତାହା ନିଜ ଜୀବନରେ ପାଳନ ନକଲେ ବି ଲୋକେ ତାକୁ ପାଦ୍ରୀବୋଲି ଡାକଂତି । ଅଭିନେତା ନିଜ ବାସ୍ତବ ଜୀବନରେ ନିମ୍ନ ମଧ୍ୟବିତ୍ତ ପରିବାରରୁ ଆସିଥିଲେ ମଧ୍ୟ ମଂଚ ଉପରେ ଦାନବୀର ହରିଶ୍ଚଂଦ୍ର ହୋଇ ବାହାରେ । କିଂତୁ ସାହିତ୍ୟିକର କ୍ରିୟାକଳାପରେ ଏଇଭଳି ଆତ୍ମ-ସ୍ୱୀକୃତ ବିଶ୍ୱାସ ବିରୋଧାଭାସ ଶୋଭା ପାଏନାହିଁ । ଅଭିନେତାର ଡାଏଲଗ୍‌ପରି ସାହିତ୍ୟଟା କବି ବା ଲେଖକଂକ ପାଇଁ କେବଳ ମୌଖିକ ଭାଷା ନୁହେଁ । ଏହା ତାର ଅଂତରର ଭାବାବେଗରୁ ସୃଷ୍ଟି ହୋଇଥିବା ନିଜସ୍ୱ ସ୍ୱତଃସ୍ଫୁର୍ତ୍ତ ମୌଳିକ ସଂଳାପ । ଅଭିନେତାର ବାସ୍ତବ ଜୀବନ ସହିତ ମଂଚ ଚରିତ୍ରର କୌଣସି ସାମଂଜସ୍ୟ ନଥିଲେ କଳାକୃତିର କୌଣସି ମହତ୍ତ୍ୱ ହାନି ଘଟେ ନାହିଁ । ସାହିତ୍ୟ କ୍ଷେତ୍ରରେ ଅବସ୍ଥା ଠିକ୍ ଏକାଭଳି ନୁହେଁ ।

ଅଭିନେତା ଶିକ୍ଷଣୀୟ ଜ୍ଞାନ ଏବଂ ତାଲିମ ଉପରେ ନିର୍ଭର କରିଥାଏ । କିଂତୁ କବି ହିଁ କବିତାର ସ୍ରଷ୍ଟା । ଅଭିନେତା ନାଟକୀୟ ଚରିତ୍ର ଏବଂ ସଂଳାପର ସ୍ରଷ୍ଟା ନୁହେଁ । ସେ ସେଇଭଳି ଚରିତ୍ରରେ ଅଭିନୟକଳାରେ ତାଲିମପ୍ରାପ୍ତ ପେଷାଦାର

ବା ଏକ୍ସପର୍ଟ । କିନ୍ତୁ ସେଇ ଚରିତ୍ରର ମୌଳିକ ସ୍ରଷ୍ଟା ହେଉଛନ୍ତି କବି, ଗାଳ୍ପିକ, ଔପନ୍ୟାସିକ ଏବଂ ନାଟ୍ୟକାର । ସାହିତ୍ୟ ଜଗତରେ ଯେମାନେ ନିଜ ଅନ୍ତରର ସ୍ୱତଃସ୍ଫୂର୍ତ୍ତ ବାଣୀକୁ ପାଠ ପାଠୀଙ୍କ କଣ୍ଠରେ ସଞ୍ଚାରିତ କରନ୍ତି କଳାସୃଷ୍ଟି ଉଦ୍ଦେଶ୍ୟରେ ।

କିନ୍ତୁ କବି ସାହିତ୍ୟିକଙ୍କର ଜୀବନର ଏଇ ସ୍ୱତଃସ୍ଫୂର୍ତ୍ତ ବାଣୀ କେବଳ ତାଙ୍କର ନିତିଦିନିଆ ଜୀବନ ସଂଗ୍ରାମର ବାଣୀ ନହୋଇ ଜୀବନଦର୍ଶନର ବାଣୀ ହେବା ଉଚିତ । ମଣିଷ ସଂସାରରେ ନିତିଦିନିଆ କ୍ଷୟକ୍ଷତି, ସୁଖଦୁଃଖ, ହର୍ଷ-ବିଷାଦର କାହାଣୀର ବିଜ୍ଞାପନବାଲା ଦୁଆରେ ଦୁଆରେ ଗଳା ଫଟାଇ ଚିତ୍କାର ଛାଡ଼ନ୍ତି । କିନ୍ତୁ ସେଥିରେ ଜୀବନ ଦର୍ଶନ ଥାଏନାହିଁ କିମ୍ବା ଥିଲେବି ତାହା ବକ୍ତାର ସ୍ୱକୀୟ ଜୀବନରେ ଦର୍ଶନ ସହିତ ମେଳ ଖାଏନାହିଁ । ସେହିହେତୁ ତାହା ଶ୍ରୋତା ସମାଜରେ ବା ବକ୍ତାଙ୍କ ନିଜ ଜୀବନ ଉପରେ କୌଣସି ପରିବର୍ତ୍ତନ ଆଣି ପାରେନାହିଁ ।

ସାହିତ୍ୟିକର ବାଣୀ ଠିକ ସେଇଆ ନୁହେଁ । ସାହିତ୍ୟିକର ବାଣୀ ଆତ୍ମ-ପରିବର୍ତ୍ତନ ଏବଂ ସାମାଜିକ ପରିବର୍ତ୍ତନର ବାଣୀ । ନିତିଦିନିଆ ସୁଖଦୁଃଖ, ହର୍ଷ ବିଷାଦ, ପ୍ରେମ ବିରହର ଅନୁଭୂତି ଉଦ୍ଭାସିତ ଜୀବନଦର୍ଶନର ବାଣୀ ହିଁ ସାହିତ୍ୟିକର ବାଣୀ । ଏହାର ପ୍ରଭାବ ଏକମୁଖୀ ନୁହେଁ, ଦ୍ୱିମୁଖୀ । ଏହାକୁ ଯିଏ ଲେଖେ, ସେ ଲେଖୁଲେଖୁ ବଦଳିଯାଏ ଏବଂ ଯିଏ ପଢ଼େ ସେ ପଢୁପଢୁ ମଧ୍ୟ ବଦଳିଯାଏ । ଯେଉଁ ସାହିତ୍ୟରେ ସୃଷ୍ଟିକୁ ବା ସ୍ରଷ୍ଟାକୁ ବଦଳାଇ ପାରିବାର ଶକ୍ତିନାହିଁ, ସେ ସାହିତ୍ୟରେ ସୃଷ୍ଟି ଏବଂ ସ୍ରଷ୍ଟାଙ୍କ ମଧ୍ୟରେ ଯୋଗାଯୋଗ ମଧ୍ୟ ପ୍ରତିଷ୍ଠିତ ହୋଇ ପାରିବନାହିଁ । ସେପରି ସୃଷ୍ଟିରେ କବି ଏବଂ ସାହିତ୍ୟିକଙ୍କର ଲେଖା ଅଭିନେତାର ସଳାପଛଡ଼ା ଆଉ କଣ ହୋଇପାରେ ?





## ॥ ସାହିତ୍ୟିକର ଆତ୍ମା ॥

ଗ୍ରୀକ୍ ଦାର୍ଶନିକ ସକ୍ରେଟିସ ଥରେ ଉଜ୍ଜ୍ୱଳ ଦିବାଲୋକରେ ମଶାଲ ଧରି ବାହାରିଥିଲେ । ଦିବାଲୋକରେ ଦିହୁଡ଼ି ଜାଳିବା ପାଗଳର କର୍ମ । ସକ୍ରେଟିସ ତ ପାଗଳ ନୁହଁନ୍ତି । କିନ୍ତୁ ନିର୍ମଳ ଦିବାଲୋକରେ ମଧ୍ୟ ଅବଗୁଣ୍ଠିତ ଆତ୍ମାର ସନ୍ଧାନ ନେଲାବେଳେ ଚକ୍ଷୁଷ୍ମାନ ମଣିଷଙ୍କୁ ଇଙ୍ଗିତ ଦେବାଲାଗି ସେ ନିଜ ହାତରେ ଗୋଟିଏ ଦିହୁଡ଼ି ଜଳାଇ ଚତୁର୍ଦ୍ଦିଗରେ ବୁଲିଥିଲେ ।

ସମାଜରେ ସାହିତ୍ୟିକର ଭୂମିକା ତା'ଠାରୁ ଭିନ୍ନ ନୁହେଁ । ଅନ୍ଧକାରରେ ବର୍ତ୍ତିକା ଜାଳିବା ଚିରାଚରିତ କର୍ମ । ଯେଉଁ ଦୃଶ୍ୟ ଆଖିକୁ ପ୍ରତ୍ୟକ୍ଷ ହୋଇଯାଏ, ତାହା ଦେଖାଇବା ଲୋକର ଅଭାବ ରହେନାହିଁ । ଯେଉଁ ସତ୍ୟ ସାଧାରଣଙ୍କ ଦୃଷ୍ଟିବିନ୍ଦୁରେ ଅଗୋଚର ଅସ୍ତମିତ, ତା'ର ଦିଗ୍‌ବଳୟର ସୀମାରେଖାକୁ ଭେଦ କରିବାହିଁ ସାହିତ୍ୟିକର କର୍ମ । ସେଇହେତୁ କବି ଲେଖକଙ୍କୁ କ୍ରାନ୍ତଦର୍ଶୀ କୁହାଯାଏ ।

ପଶ୍ଚାତ୍ୟ ଜନସମାଜରେ ଯେତେବେଳେ ଯେଉଁଠି ନୂତନ ଅନେକ ସାର୍ତ୍ରି ଅସ୍ଥିରତା ଦେଖାଦେଇଛି, ସେମାନଙ୍କର ସୂତ୍ରଧର ହୋଇଛନ୍ତି କବି, ଲେଖକ ଓ କଳାକାର । ବିଜ୍ଞାନ, ରାଜନୀତି, ଦର୍ଶନ ଆଦି ମନୀଷ ସମାଜର ପ୍ରବୃତ୍ତିକ ଚେତନାଶୀଳ ଭୂମିକାରେ ସାହିତ୍ୟିକ ସବୁବେଳେ ଅଗ୍ରଦୂତ ସାଜିଛି । କଳା ଓ ସାହିତ୍ୟ ନଥିଲେ, ମଣିଷ ସମାଜରେ ସୃଜନ ପ୍ରତିଭା ଅଚିରାତ୍ରେ ବସ୍ତୁତାନ୍ତ୍ରିକ ହୋଇଯିବ ।

ଆଧୁନିକ ପୃଥିବୀରେ ବୈଜ୍ଞାନିକଦଳ ଚନ୍ଦ୍ରଅଭିଯାନଲାଗି ଅହରହ ଅକ୍ଳାନ୍ତ ଉଦ୍ୟମ କରୁଥିଲାବେଳେ ସେମାନଙ୍କ ମାନସପଟଳରେ କେବଳମାତ୍ର ବସ୍ତୁତାନ୍ତ୍ରିକ ବିଶ୍ୱର ପ୍ରତିଧ୍ୱନିତ ହେଉଛି ବୋଲି ଧରି ନିଆଯାଇ ନପାରେ । ଆପୋଲ ମହାକାଶଯାନର ଅଧ୍ୟକ୍ଷ କର୍ଣ୍ଣେଲ ବୋରମ୍ୟାନ ଲକ୍ଷଲକ୍ଷ ମାଇଲ ଦୂରରେ ଚନ୍ଦ୍ର ପରିକ୍ରମା କଲାବେଳେ ପୃଥିବୀବାସୀଙ୍କୁ କ୍ରିସମାସ ଅବସରରେ ଯେଉଁ ଅଭିନନ୍ଦନ ବାର୍ତ୍ତା ଶୁଣାଇଛନ୍ତି ସେଥିରେ ତାଂକ ମନର ନିଛକ ବସ୍ତୁବାଦୀ ଭାବନା ପ୍ରତିଫଳିତ ହୋଇନାହିଁ । ସେ କହିଛନ୍ତି—"ହେ ଈଶ୍ୱର, ପୃଥିବୀରେ ମନୁଷ୍ୟଜାତି ଭିତରେ ସକଳପ୍ରକାର ଭୁଲଭ୍ରାନ୍ତିସତ୍ତ୍ୱେ ପରସ୍ପର ପ୍ରତି ସ୍ନେହ ସୁହୃଦତା ସୃଷ୍ଟି କରିବାଲାଗି ଆମକୁ ଶକ୍ତି ଦିଅ ।"

ଚନ୍ଦ୍ର ଅଭିଯାନକାରୀ ବୈଜ୍ଞାନିକ ବୋରମ୍ୟାନଙ୍କର ଏଇ ଉତ୍କଣ୍ଠିତ ଭାଷାହିଁ ସାହିତ୍ୟର ଚିରନ୍ତନ ମର୍ମବାଣୀ । ଏହାହିଁ ମାନବସମାଜଲାଗି ସଂସ୍କୃତିର ଅବିନଶ୍ୱର ବାର୍ତ୍ତା । ସାହିତ୍ୟ ଓ ସଂସ୍କୃତିର ଯଦି ବିଜ୍ଞାନ ଜଗତ ଉପରେ କିଛିହେଲେ ପ୍ରଭାବ ନଥାନ୍ତା, ତାହାହେଲେ ମହାକାଶ ବିଜେତା ସାମରିକ ଅଫିସରଂକ ବଜ୍ରଭଯ୍ୟ କଂଠରୁ ହୁଏତ କୌଣସି ଯୁଦ୍ଧଖୋର ମଣିଷର ସ୍ୱଗତୋକ୍ତି ଉଦ୍‌ଘୋଷିତ ହୁଅନ୍ତା !

କିନ୍ତୁ ଆଜିକାର ବିଜ୍ଞାନ ଠିକ୍ ସେଇ ପ୍ରକାର ଆଇନଷ୍ଟାଇନଙ୍କ ଚିନ୍ତା ଚରିତର ବଶବର୍ତ୍ତୀ ହୋଇ ଜନସମାଜ ପାଖରେ ସ୍ୱୀକୃତ ଦାବୀ କରି-ପାରେନା । ବିଂଶ ଶତାବ୍ଦୀର ପ୍ରଥମ ଚାରି ଦଶକର ଭୁଲ୍‌ଭ୍ରାନ୍ତିକୁ ବୈଜ୍ଞାନିକ ହୁଏତ କାଳକ୍ରମେ ସୁଧାରିବାକୁ ଚେଷ୍ଟା କରିଛି । ସେଇହେତୁ ମହାକାଶଗାମୀ ବୋରମ୍ୟାନଙ୍କ କଂଠରେ ପୃଥିବୀବାସୀଙ୍କ ପ୍ରତି ପ୍ରେମ ଓ ମୈତ୍ରୀର ବାଣୀ ଉଚ୍ଛୁଳିପଡ଼ିଛି । ଆଧୁନିକ ଜଗତରେ ସର୍ବଶ୍ରେଷ୍ଠ ଧନତାନ୍ତ୍ରିକ ଦେଶର ମହାକାଶ ବିଜୟୀ କର୍ଣ୍ଣେଲ ବୋରମ୍ୟାନ ଏକା ନୁହଁନ୍ତି, ସାଂପ୍ରତିକ ଆଣ୍ବିକ ଯୁଗର ଯେକୌଣସି ବିଜ୍ଞାନ ବିଜେତାଂକ ମୁହଁରୁ ଏପରି କୋମଳ ଉଦାରବାଣୀ ନିର୍ଗତ

ହେବା, ସବୁଠାରୁ ଆଶ୍ଚର୍ଯ୍ୟଜନକ ନୁହେଁକି ? ଏଇଥିରୁ ବୁଝାଯାଇଛି ଯେ, ସାହିତ୍ୟ ଓ ସଂସ୍କୃତି ପାଖରେ ଦିଗ୍‌ବିଜୟୀ ବିଜ୍ଞାନବିତ୍ ମଧ୍ୟ କ୍ଷଣକାଳଲାଗି ହାର ମାନିଯାଉଛନ୍ତି !

ଏଇ ପ୍ରଶ୍ନରୁ ସୂଚୀତ ହେଉଛି ଯେ, ପୃଥିବୀରେ ଏବେ ମଧ୍ୟ ଅବଗୁଣ୍ଠିତ ଆତ୍ମାର ତଲାସି ନେବାଲାଗି ସାହିତ୍ୟିକକୁ ଦିହୁଡ଼ି ଜାଳିବାପାଇଁ ପଡ଼ିବ ! ଏବେ ମଧ୍ୟ ମଧ୍ୟାହ୍ନ ଅନ୍ଧକାର ବିଂଶ ଶତାବ୍ଦୀର ଉଜ୍ଜ୍ୱଳ ଆକାଶକୁ ଅବଗୁଣ୍ଠିତ କରିଛି । ପୃଥିବୀର ଆକାଶ ଗୁଣ୍ଡି ଗ୍ରହାନ୍ତର ବିଜୟୀ ବୈଜ୍ଞାନିକ ଚନ୍ଦ୍ରମା ଆକାଶରେ ନୂତନ ସୂର୍ଯ୍ୟୋଦୟ ଦେଖିଲାବେଳେ ତଥାପି ବି ନିଜର ଚିତ୍ତ ଦର୍ପଣରେ ମଣିଷର ଆର୍ତ୍ତନାଦ ପାଇ ଭଗବାନଙ୍କୁ ଦାୟୀକରି ଚିତ୍କାର ଛାଡୁଛି । ଏବେ ମଧ୍ୟ ଚିନ୍ତାଶୀଳ ଜଗତରେ ମଣିଷର ଅନ୍ତରାତ୍ମା ପରିଷ୍କାର ନୁହେଁ । ବିଂଶ ଶତାବ୍ଦୀର ବିଜ୍ଞାନ ମଣିଷ ଅବୟବକୁ ଡେଜର୍ଷ୍ଟ୍ରୟ କରିପାରିବା ପରେ ମଧ୍ୟ ତାର ଅନ୍ତର ଆତ୍ମାକୁ ଅଜ୍ଞତାର ତନ୍ତ୍ର ଭିତରେ ଆବଦ୍ଧ କରି ରଖିଛି । ସେଇହେତୁ ବୈଜ୍ଞାନିକ ମଣିଷର ବାର୍ତ୍ତା ଓ କର୍ମ ଭିତରେ ମୁହୁର୍ମୁହୁ ପାର୍ଥକ୍ୟ ଦେଖାଦେଇଛି । ବିଜ୍ଞାନ ଏପର୍ଯ୍ୟନ୍ତ ମଣିଷର ଏକ ବାହ୍ୟ ପରିଚୟ ଭିତରେ ସୀମାବଦ୍ଧ । ବିଂଶ ଶତାବ୍ଦୀର ପରିଣତ ବିଜ୍ଞାନ ଆଜିଯାଏ ମଣିଷର ଅବଗୁଣ୍ଠିତ ଆତ୍ମାକୁ ପରିସ୍ଫୁଟ କରି ପାରିଲାନାହିଁ ।

ଆପୋଲ ମହାକାଶ ଯାନର ପରିଭ୍ରମଣକାରୀ କର୍ଣ୍ଣେଲ ବୋରମ୍ୟାନଙ୍କ ଭାଷାରୁ ଏହାହିଁ ପ୍ରମାଣିତ ହେଉଛି ଯେ ସେ ମଧ୍ୟ ଜାଗତିକ ଚିନ୍ତାର ହଠକାରିତା ମଧ୍ୟରୁ ମୁକ୍ତ ହୋଇ ପାରିନାହାନ୍ତି । ଆପୋଲ ଯାନ ମଧ୍ୟରେ ଯଦି ବିସ୍ଫୋରକ ଝିଙ୍କା ହୋଇ ନଥାନ୍ତା, ତା'ହେଲେ ତାହା ପୃଥିବୀର ମାଧ୍ୟାକର୍ଷଣକୁ ଡେଇଁ ଚନ୍ଦ୍ର ମଣ୍ଡଳରେ ପ୍ରବେଶ କରନ୍ତା ନାହିଁ କିମ୍ବା ଚନ୍ଦ୍ର ମଣ୍ଡଳରୁ ପୁନଶ୍ଚ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରି ପାରନ୍ତା ନାହିଁ । ମହାକାଶ ଯାନ ମଧ୍ୟରେ ସ୍ୱୟଂକ୍ରିୟ ବିସ୍ଫୋରଣ ଶକ୍ତିର ପ୍ରୟୋଗ ଏବଂ ତା'ର ନିର୍ଭୁଲ ଲକ୍ଷ୍ୟସାଧନ ପାଇଁ ଅଳ୍ପ କେତେବର୍ଷ ବ୍ୟବଧାନରେ ବହୁ ପରୀକ୍ଷାନିରୀକ୍ଷାର ପ୍ରୟୋଜନ ହୋଇଥିଲା । କିନ୍ତୁ ଜୀବସୃଷ୍ଟି ମଧ୍ୟରେ ମଣିଷର କ୍ରିୟାତ୍ମକ ବିକାଶ ତ ସେପରି କୌଣସି ବୈଜ୍ଞାନିକ ପରୀକ୍ଷାନିରୀକ୍ଷାକୁ ଅପେକ୍ଷା ରଖିନାହିଁ । ବିବର୍ତ୍ତନର ଧାରାପ୍ରବାହରେ ମଣିଷ କେବେଠାରୁ ଏକ ସ୍ୱୟଂ ସମ୍ପୂର୍ଣ୍ଣ ପ୍ରାଣୀରୂପେ ପ୍ରତିଷ୍ଠାଲାଭ କରିଛି ।

କିନ୍ତୁ ସେଇ ଶ୍ରେଷ୍ଠ ଜୀବର ଅନ୍ତର ଭିତରେ ଆଜି ମାନବତ୍ୱର ପରିଚୟ କେଉଁଠି ? ଅନ୍ତରାତ୍ମାରେ ମାନବତ୍ୱର ପରିଚୟ ନଥିବାରୁ ବିଶ୍ୱବିଜୟୀ ବୈଜ୍ଞାନିକ ଆଜି ମଧ୍ୟ ମଣିଷ ଶିଶୁକୁ ଭଗବାନଙ୍କ ପାଦତଳେ ସମର୍ପଣ କରି ନିଜର ବସ୍ତୁ-

ଭାଂଗିକ ବିଳାସ ମଧ୍ୟରେ ଆତ୍ମବିସ୍ମୃତ ରହିବାକୁ ଚାହାଂନ୍ତି । ଆଜିକାର ବିଜ୍ଞାନ ତତ୍ତ୍ୱ ଉପଭୋଗ ଶକ୍ତ ମୁଷ୍ଟିମେୟଙ୍କ ହାତରେ ସୀମାବଦ୍ଧ । ବୈଜ୍ଞାନିକର ନପୁଂସକ ଦର୍ଶନଭଙ୍ଗୀ ଆଜି ସାଧାରଣ ମଣିଷ ବିଜ୍ଞାନର ଚମତ୍କାରିତାରେ କାମୁଡ଼ି ହତଚେତନ ହୋଇ ରହୁଚି । ରେଡ଼ିଓ, ଟେଲିଭିଜନର ପ୍ରଚାର ମାଧ୍ୟମରେ ଆଜିକାର ବିଜ୍ଞାନ ଜନସାଧାରଣଂକର ଯାହାକିଛି ଦୃଷ୍ଟିଭୋଗ୍ୟ ଏବଂ କର୍ଣ ତୃପ୍ତିକର ହୋଇଯାଉଚି ସତ୍ୟ, କିଂତୁ ଜନସାଧାରଣ ତା'ର ଉପଭୋକ୍ତା ନୁହଁଂନ୍ତି ।

ସାଧାରଣ ମଣିଷଠାରୁ ଆଜିର ବିଜ୍ଞାନ ବିଭୂତି ଯେତିକି ଦୂରରେ ଅବସ୍ଥିତ ମହାମତି ସକ୍ରେଟିସ ମଧ୍ୟ ସେକାଳରେ ଖ୍ରୀଷ୍ଟ ଜନ୍ମ ହେବାର ୪୦୦ ବର୍ଷ ପୂର୍ବେ ମଣିଷ ଜାତିକୁ ପରଣତ ମୂଲ୍ୟବୋଧଠାରୁ ସେତିକି ଦୂରରେ ଦେଖି ହେମଲକ ହସୁହସୁ ଜଳାଇ ଚକ୍ଷୁଷ୍ମାନ ମଣିଷର ପ୍ରାଣାତ୍ମାର ସନ୍ଧାନ ନେଉଥିଲେ ।

ସାଧାରଣ ଆଖିକୁ ଯାହା ଦେଖାଯାଏ, ତାହା ସାହିତ୍ୟ ନୁହେଁ କିଂବା କଳା ମଧ୍ୟ ନୁହେଁ ! ବହୁକାଳଧରି ପୃଥିବୀର ସାହିତ୍ୟିକକୁ ଏକ ସୀମିତ ପରିଚୟ ବୃତ୍ତ ମଧ୍ୟରେ ଆତ୍ମ ବିସ୍ମୃତ ହେବାକୁ ପଡୁଥିଲା । ନଦୀ, ଗିରି, ବନ, ଝରଣା ଓ ଦେବାଳୟ—ଏମାନ ଭିତରେ ସାହିତ୍ୟିକର ସୃଜନ ପ୍ରତିଭା ସ୍ରୋମଂଥିତ ହେଉଥିଲା । କେତେବେଳେ କେମିତି ମୃତ ମଣିଷର ଶରୀର ଏବଂ ଶ୍ମଶାନର ଚିତାଗ୍ନି ଉପରେ ସାହିତ୍ୟିକର ଦୃଷ୍ଟି ପଡ଼ିଯାଉଥିଲେ ସେ ସଂସାରବାସୀଂକୁ ବାସନାବର୍ଜିତ ହେବା-ଲାଗି ଉପଦେଶ ଦେଉଥିଲା ।

ଆଧୁନିକ ଯୁଗରେ ସେ ଚିତ୍ର ବଦଳିଗଲା । ମଣିଷର ଉପଭୋଗ ସୀମା ଭିତରକୁ ବେଗଶାଳୀ ଯାନବାହାନ ଆସିବା ପରେ ସାହିତ୍ୟିକ ପାଖରେ ଦୃଶ୍ୟ-ମାନ ଜଗତର ଚିତ୍ରପଟ କ୍ରମ ବିସ୍ତାରିତ ହେବାକୁଲାଗିଲା । ନଜର ଚିତ୍ର-କଳ୍ପ ଭିତରେ ସେ କେତେ ନୂଆ ଅନୁଭୂତି ନୂଆ ଦୃଶ୍ୟମାନ ବସ୍ତୁର ପରିଚୟ ଆଣି ଥୋଇଲା । କିଂନ୍ତୁ ଏତିକିରେ କଣ ତା'ର ଅନ୍ୱେଷଣ ଶେଷ ହୋଇ ଗଲାକି ?

ଦୃଶ୍ୟମାନ ଜଗତର ଚିତ୍ରପଟ ଦେଖାଇବାଲାଗି ଆଜିକାଲି ଲେଖକ ଗୋଷ୍ଠୀ ଭିତରେ ଆଉ ଗୋଟିଏ ନୂଆ ବିଭାଗ ସୃଷ୍ଟି ହୋଇଯାଉଚି । ସେଇ ବିଭାଗର ନାମହେଲା ସାମ୍ବାଦିକତା । ସାହିତ୍ୟର ଭୂମିକା ସମ୍ବାଦଜୀବୀଠାରୁ ପୃଥକ । ମଣୀଳଧାରୀ ସାହିତ୍ୟିକ ଦଳ ନିଜ ପରିଚୟର ସାର୍ଥକ ଇତିବୃତ୍ତ ମଧ୍ୟରେ ଏଯୁଗର ବାସ୍ତବ ମର୍ମ ଚେତନାକୁ ହୃଦୟଂଗମ କରଂନ୍ତୁ । ତା' ନହେଲେ ଏବକାର ସାହିତ୍ୟ ଖାଲି ବେଶପୋଷାକ ପିଂଧା ପ୍ଲାଷ୍ଟିକ୍ କଂଢେଇ ହୋଇଯିବ ।

---



## ॥ ଅନୁନ୍ନତ ଦେଶର ସାହିତ୍ୟ ଓ ରାଜନୀତି ॥

ସମାଜରେ ସାହିତ୍ୟ ଓ ରାଜନୀତି ଦୁଧ ଓ ଦହିପରି ସମଗୁଣ ବିଶିଷ୍ଟ, କିଂତୁ ସ୍ଥଳବିଶେଷରେ ସେମାନେ ପୃଥକ ଏବଂ ବିପରୀତ । ଦୁଧରୁ ଦହି ତିଆରି ହେଲାଭଳି ସାହିତ୍ୟରୁ ରାଜନୀତି ଜନ୍ମହୁଏ । କିଂତୁ ସାହିତ୍ୟରେ ଥରେ ପେଷାଦାରୀ ରାଜନୀତି ପଶିଗଲେ, ଦୁଧରେ ଦହି ପଶିଲାଭଳି ତାହା ଆଉ ସାହିତ୍ୟ ହୋଇ ରହିବନାହିଁ ।

ଅନେକ ପ୍ରବକ୍ତା ଆଜି ସାହିତ୍ୟ ମଂଚରେ ଠିଆହୋଇ ସାହିତ୍ୟ ରାଜନୀତିରୁ ପୃଥକ ନୁହେଁବୋଲି ଉଦ୍‌ବୋଧନ ଦିଅଂତି । କିଂତୁ ଯେଉଁ ମଂଚରୁ ଏପ୍ରକାର ସନ୍ନ୍ୟସ୍ତ ବାଣୀ ଶୁଣାଯାଇଛି, ସେହି ମଂଚରେ ପୁଣି ବହି ପୋଡ଼ାଯାଇଛି, ଚାଦର ପଂଡାଯାଉଛି ଏବଂ ସାହିତ୍ୟ ଏକାଦମୀ ତଥା ସାଂସ୍କୃତିକ ବ୍ୟାପାର ବିଭାଗର ଅନୁଗ୍ରହ ବିଗ୍ରହଲାଗି ଭକ୍ତମାନଂକ ମଧ୍ୟରେ ଚାଜିକ ଛଡ଼ାଛଡ଼ି ଓ ଠେଲାପେଲା ମଧ୍ୟ ଚାଲିଛି ।

ଭାରତରେ ପେଷାଦାର ରାଜନୀତି ଯେଉଁପ୍ରକାର ଅବସ୍ଥାରେ ପଡ଼ିରହିଛି, ତାହା କେବଳ ଚାଲି-ଚଳଣ, ପୋଷାକ-ପତ୍ର ଏବଂ ବାହ୍ୟ ଉପଚାରର ରାଜନୀତି । ସେଥିରେ ଅନୁଭୂତିର ରୂପ ଥାଇପାରେ, କିଂତୁ ଆଂତରିକ ହୃଦୟାବେଗ ନାହିଁ । ଏ ରାଜନୀତିର ଖୋଳପା ଭିତରେ ଆତ୍ମାର କରୁଣ କ୍ରଂଦନ କେହି ଶୁଣଂତିନାହିଁ ।

ଊନବିଂଶ ଶତାବ୍ଦୀ ବେଳକୁ ବିଦେଶରୁ ଆମଦାନି ଏଇ ରାଜନୀତିରେ ଭାରତର ଆତ୍ମା ଓ ହୃଦୟର ତୃଣବୃକ୍ଷ ରୋପଣ କରିବାଲାଗି ଯେଉଁ ଉଦ୍ୟମ ହୋଇଥିଲା, ସେ ଉଦ୍ୟମ ଏବେବି ଯେଉଁପରି ଚାଲିଛି— ମରୁଭୂମିର ଓଏସିସ୍ ଧାରରେ କଂଟକ ବୃକ୍ଷ ରୋପଣ କଲାପରି ।

ବିଦେଶ କହିଲେ ବିଶେଷକରି ଇଂଲଂଡ, ଆମେରିକା, ଫ୍ରାନ୍ସ, ଓ ଜର୍ମାନୀ ଦେଶର ରାଜନୀତି; ଏ ଦେଶରେ ଜନ୍ମ ହୋଇଥିବା ବୁଦ୍ଧିଜୀବୀ ଲୋକମାନଂକୁ ବିଶେଷରୂପେ ପ୍ରଭାବିତ କରିଥିଲା । ସେ ରାଜନୀତିକୁ ହୃଦୟର ରାଜନୀତି ନକହି ମସ୍ତିଷ୍କର ରାଜନୀତି, ବୁଦ୍ଧିବଳର ରାଜନୀତି, କାଇଦା କାନୁନର ଔପଚାରିକ ରାଜନୀତି କହିଲେ ଅଯୁକ୍ତି ହେବନାହିଁ । ବସ୍ତୁତଃ ଦେଖିବାକୁ ଗଲେ ସେ ରାଜନୀତିର ଜନ୍ମ-କାତକ, ସ୍ୱଭାବ ଚରିତ ମଧ୍ୟ ଠିକ ସେଇଆ, କାରଣ ତାହା ହେଉଛି ପୁଂଜିବାଦୀ ରାଜନୀତି ।

ବିଂଶ ଶତାବ୍ଦୀର ଆରଂଭବେଳକୁ ସମୁଦ୍ରର ଲୁଣିଆ ପାଣିରେ ନଦୀ ମୁହାଣବାଟେ ମଧୁର ଜଳ ମିଶିଲାଭଳି ହେଇ ରାଜନୀତିରେ ପୁଣି ଏସିଆ ମହାଦେଶର ପାମିର ମାଳଭୂମିର ପଶ୍ଚାତ୍‌ଭାଗରୁ ଏକ ନୂତନ ଚିଂତାର ସ୍ରୋତ ଆସି ମିଶିଗଲେ ମଧ୍ୟ ସେଇ ପୁରୁଣା ଜଳଭଂଡ଼ାରରେ ଏପର୍ଯ୍ୟଂତ କୌଣସି ଗୁଣାତ୍ମକ ପରିବର୍ତ୍ତନ ସାଧିତ ହୋଇନାହିଁ । ସବୁ ରସ ଓ ସବୁ ରଂଗର ଜଳଧାର ଭାରତୀୟ ମାଟିର ସ୍ୱାଦ ଏବଂ ଗଂଧ ଗ୍ରହଣ କରି ଏକ ଆବଦ୍ଧ ଜଳଭଂଡାର ସୃଷ୍ଟି କରିଛି ମାତ୍ର ।

କିଂତୁ ସେଇ ମିଶ୍ରିତ ଜଳଭଂଡାରର ପଂକିଳ ଜଳରେ ଜଳପ୍ରାଣୀଂକର ସ୍ୱାସ୍ଥ୍ୟର କି ପରିବର୍ତ୍ତନ ଘଟିବ ତାହା ଏପର୍ଯ୍ୟଂତ ନିର୍ଣ୍ଣିତ ହୋଇନାହିଁ । ସେଇ ପଂକିଳ ଜଳ ଭଂଡାରରେ ଅବଗାହନ କରୁଥିବା ପ୍ରାଣୀମାନଂକର ରଂଗ କଳା ଦେଖାଯିବ କି ଗୋରା ଦେଖାଯିବ, ସେମାନେ ଖଦଡ଼ ପିଂଧି ଲୋମ-କୂପରୁ ଘର୍ମ ନିର୍ଗତ କରିବା ପାଇଁ ପସନ୍ଦ କରିବେ କି ଟେରେଲିନ ପିଂଧି ହାଓ୍ୱା ଖାଇବାକୁ ଚାହିଁବେ; ସେମାନେ ରାସ୍ତାର ବାମ ମାର୍ଗକୁ ଗଡ଼ିବେ କି ଦକ୍ଷିଣଆଡ଼େ ଥକାପଡ଼ି ବସି ରହିବେ— ତାହା କିଛି ହେଲେ ସ୍ଥିର ନୁହେଁ ।

ତେଣୁ ଏ ରାଜନୀତିକୁ ମିଶାମିଶି ରାଜନୀତି, ଫେଁଟାଫେଁଟି ରାଜନୀତି ଓ ଯୋଡ଼ାଯୋଡ଼ି ରାଜନୀତି, ଡେମୋକ୍ରେସି ପ୍ରଭୃତି ହୋସାଲକନ୍ସର ଖେଳୁଡ଼ି ରାଜନୀତି ପୁଂଜିବାଦ ପ୍ରଭୃତି ଶ୍ରମିକ-କୃଷକ କଂଦାବାଦର ରାଜନୀତି, ବ୍ୟୁରୋକ୍ରେସି ଭିତରେ ଶାସନ ସଂସ୍ଥାର ରାଜନୀତି, କର୍ପସନ ଭିତରେ ଅଂଟି-କର୍ପସନର ରାଜନୀତି, ସ୍ୱାବଲଂବୀତାର ଭିକ୍ଷାବୃତ୍ତିର ରାଜନୀତି, ସଦାଚାରଯୁକ୍ତ କଦାଚାର ରାଜନୀତି ଏବଂ ଶେଷବେଳକୁ ଦୁର୍ଭିକ୍ଷ ସୃଷ୍ଟିକରି ରିଲିଫ୍ ବାଂଟି ତଦ୍ୱାରା ଦଳ ପୁଷ୍ଟି କରିବା ରାଜନୀତି କୁହାଯାଇପାରେ । ଏ ପାଷାଂଡ ପ୍ରତାରଣାଭଙ୍ଗିମା ଏବଂ ପ୍ରତାରଣାପୂର୍ଣ୍ଣ ରାଜନୀତିରୁ ସାହିତ୍ୟ ପୃଥକ ନହେଲେ ଏ ଜାତିଟା ବଂଚିବ କିପରି ? ସାହିତ୍ୟ ଏକାଡେମୀର ସ୍ୱୀକୃତିବାହନାଲାଗି ଯଦି ସାହିତ୍ୟିକ ଖଦଡ଼ ଖୋଳ ଭିତରେ ବାହାରକୁ ବାହାରେ, ତାହାହେଲେ ତାକୁ ଆଜିର ବା କାଲିକାର ପାଠକ ସହଜେ ଚିହ୍ନି ପାରିବେ ତ ?

ତେଣୁ ସଂସ୍କୃତି, ସାହିତ୍ୟ ଏବଂ ଘରଘର ଶୋଷଣଜୀବୀ ରାଜନୀତିକୁ ଯେଉଁ-ମାନେ ଏକାଭଳି ବିବେଚନା କରୁଛଂତି ସେମାନଂକ ଭ୍ରମ-ସଂଭୂତ ବାଣୀରେ ହତାଶ ନହୋଇ ରହି ହେଉନାହିଁ । ସ୍ୱାଧୀନତା ପୂର୍ବରୁ ଏ ଦେଶରେ ଲାଟ୍, ବଡ଼ଲାଟ୍, ମ୍ୟୁନିସପାଲଟି ଚେୟାରମ୍ୟାନ, ଜିଲ୍ଲା କଲେକ୍ଟର କିଂବା ଶାସନର ବଡ଼ପାହିଆ ଲୋକମାନଂକୁ ସାହିତ୍ୟିକଭାବେ ସମ୍ମାନ ଦେବାର ପ୍ରଶ୍ନ ଉଠି ନଥିଲା । କିଂତୁ ସ୍ୱାଧୀନତା ପରେ ମଂତ୍ରୀ ଗାଦିକୁ ଯାଇଥିବା ଲୋକମାନେହିଁ ହେଲେ ସାହିତ୍ୟିକ । ସେମାନେ ସାଂସ୍କୃତିକ ରଂଗ ମଂଚରେ ଉଦ୍‌ଘାଟନ କରାଇଲେ ସଂଗୀତ, ସଂସ୍କୃତି ଓ କଳାର ଦ୍ୱାର ଉନ୍ମୋଚିତ ହେଲାନାହିଁ । ନୂତନ-ପୁରାତନ, ଆଧୁନିକ-ଅତ୍ୟାଧୁନିକ, ପ୍ରଗତିବାଦୀ-ପରିବର୍ତ୍ତନବାଦୀ ଏଇପରି ନାମ ଛଦ୍ମ ନାମରେ କି ମହାନ ଉଦ୍ଦେଶ୍ୟର ସାଧନଲାଗି କେଜାଣି ଅନୁଷ୍ଠାନମାନ ଗଢାଯାଇ ସେଥିରେ ମଂତ୍ରୀ ଓ ସରକାରୀ କର୍ତ୍ତାମାନଂକର ସେବା ପୂଜାହିଁ ସାର୍ଥକ ହେଲା । ମଂତ୍ରୀମାନେ ସାହିତ୍ୟର ଠିକାଦାର ଲୋକଂକ ହାତରେ ମଂଚ ବାଂଧିବାକୁ ଓ ଫୁଲମାଳ କିଣିବାକୁ ଅର୍ଥ ସମର୍ପଣ କରି ପୁଣି ସେଇ ମଂଚକୁ ନିଜେ ଉଦ୍‌ଘାଟନ କରି ନିଜ ଦତ୍ତ ପଇସାରେ ନିଜ ବେକରେ ଫୁଲମାଳ ପିଂଧିଲେ । ଏସବୁ ଯଦି ରାଜନୀତି ହୋଇଥାଏ, ବାସ୍ତବରେ ଏହାଠାରୁ ଅଧମ ରାଜନୀତି ପୃଥିବୀରେ ଆଉ କଣ ରହିଲା ? ଯେଉଁମାନେ ଏହାକୁ ସାହିତ୍ୟ ଓ ସାଂସ୍କୃତିକ କର୍ମରୂପେ ବିବେଚନା କରୁଛଂତି, ସେମାନଙ୍କର ମସ୍ତିଷ୍କର ଖପୁରୀ ଗୁଡ଼ିକ ସଂରକ୍ଷିତ କରି ରଖିବାଭଳି ଶୀତ-ତାପ ନିୟଂତ୍ରିତ ଯାଦୁଘର ତିଆରି ହେବା ଉଚିତ । ତା' ନହେଲେ ପୃଥିବୀରେ ଆଉ କେଉଁ ଅନୁନ୍ନତ ଦେଶରେ ବି ସାଂସ୍କୃତିକ କର୍ମର ଅପଚୟ ଏବଂ ଅପ-ପ୍ରୟୋଗଲାଗି ସୁଯୋଗ ରହିଯିବ !

ଭାରତଭଳି ଏକ ବିରାଟ ଜନମଂଗଳ ରାଷ୍ଟ୍ରରେ ସାଂସ୍କୃତିକ ବ୍ୟାପାର ତଥା ବୌଦ୍ଧିକ ଉନ୍ନୟନମୂଳକ କାର୍ଯ୍ୟଲାଗି ସରକାରଂକ ଦପ୍ତରରେ ପ୍ରଚୁର ଅର୍ଥ ବରାଦ ରହିଛି । ସେଥିଲାଗି ଦେଶରେ ଯୋଜନା ପ୍ରଣୀତ ହୋଇ କାର୍ଯ୍ୟ ଚାଲୁଛି । କିଂତୁ ସେ ଯୋଜନା ବଳରେ କୌଣସି ସହର ବା ଗ୍ରାମାଂଚଳର କି ପ୍ରକାର ବୌଦ୍ଧିକ ପରିବର୍ତ୍ତନ ଘଟିଛି, ତାହା ବିଚାର କରିବାର କଥା । ଗାଁଗହଳରେ କେତେକ ଲୋକଂକୁ ଝିଟିପିଟି ପିଂଧାଇ ରାଜଧାନୀଗାମୀ କରିବା ଏବଂ ସହରାଂଚଳର କେତେକ ନ୍ୟସ୍ତସ୍ୱାର୍ଥ ଲୋକଂକୁ ମଂତ୍ରୀମାନଂକ ସହିତ ଘରବାଗ ସମ୍ପର୍କ ସ୍ଥାପନ ପାଇଁ ସୁଯୋଗଦେଇ ଆଉ ଏକପ୍ରକାର ପରାଂଗପୁଷ୍ଟ ଶ୍ରେଣୀ ସୃଷ୍ଟିକରିବା ବ୍ୟତୀତ, ଏ ସାଂସ୍କୃତିକ ଯୋଜନା ଗୁଡ଼ିକର ଉପଯୋଗିତା କେଉଁଠି ?

ଭାରତ କଥା ଛାଡ଼ିଦେଲେ ଆମର ଏଇ କ୍ଷୁଦ୍ର ଓଡ଼ିଶା ମୁଲକରେ ମଧ୍ୟ ସ୍ୱାଧୀନତା ଆଂଦୋଳନ ବେଳର ଘଟଣାପୂର୍ଣ୍ଣ ସଂକ୍ଷିପ୍ତ ରାଜନୀତି ଭିତରେ ସାହିତ୍ୟ ଓ ସାଂସ୍କୃତିକ କ୍ଷେତ୍ରରେ ମାନଦଂଡ ନିରୂପଣ କରିବାଲାଗି ବଳିଷ୍ଠ ବ୍ୟକ୍ତିତ୍ୱର ଅଭାବ ନଥିଲା । ସେହି ମହାନବ୍ୟକ୍ତିଗଣ ଉତ୍ତର ଜୀବନରେ ରାଜ-ନୈତିକ ପଶାଖେଳରେ ଶକ୍ତିକ୍ଷୟ କରିନଥିଲେ ଓଡ଼ିଶାର ସାଂସ୍କୃତିକ ଜୀବନର ମେରୁଦଂଡ ଆଜି ଏପରି ଡେରଗୁ ହୋଇପିବାର କୌଣସି ଅବକାଶ ନଥାଂତା ।

ସାହିତ୍ୟ ଓ ସଂସ୍କୃତିକୁ ବାସ୍ତବ ଅର୍ଥରେ ରାଜନୀତିର ଜନକ କୁହାଯାଏ । କିଂତୁ ଯେଉଁଭଳି ମହାନ ଯୁଗପ୍ରବର୍ତ୍ତକ ସଂସ୍କୃତି ଜନକ ଏଭଳି କଦାଚିତ୍ ସନ୍ତାନକୁ ଜନ୍ମଦେବା କଦାପି ସ୍ପୃହଣୀୟ ନୁହେଁ । ଯେଉଁଠି ସାହିତ୍ୟ ଓ ସଂସ୍କୃତି ଗର୍ଭରୁ ଏଇପରି ବିକଳାଂଗ ଅଷ୍ଟପଦୀ ( ଅକ୍ଟୋପସ ) ଜୀବମାନେ ଜନ୍ମ ହୁଅଂତି ସେଠି ସାହିତ୍ୟ ଓ ସଂସ୍କୃତିର ମଧ୍ୟ ଅଧଃପତନ ଘଟିଯାଇଛି ବୋଲି ଧରିନେବାକୁ ହେବ ।



୧



## ॥ ସାହିତ୍ୟ ସ୍ରଷ୍ଟାର ଦାୟିତ୍ୱ ॥

ଆବହମାନକାଳରୁ ସମାଜପ୍ରତି ସଚେତନ ଦାୟିତ୍ୱବୋଧ ଦୃଷ୍ଟିରୁ ନାନା ଦେଶରେ ସାହିତ୍ୟ ସର୍ଜନା ଆରଂଭ ହୋଇଛି । ବେଦ, ଉପନିଷଦ, ଜାତକ ତଥା ରାମାୟଣ ମହାଭାରତ ଯୁଗରେ ଶାସ୍ତ୍ର ପୁରାଣର ରଚୟିତାମାନେ ସମାଜପ୍ରତି ସେମାନଂକର ଗୁରୁ ଉତ୍ତର ଦାୟିତ୍ୱ ଉପଲବ୍ଧିକରି ଗ୍ରଂଥ ରଚନା କରିଥିବାରୁ ସେଇସବୁ ରଚନାବଳୀକୁ କାଳଜୟୀ ସାହିତ୍ୟ କୁହାଯାଏ । ରାମାୟଣ ଗ୍ରଂଥରେ ଆର୍ଯ୍ୟ ନରପତି ରାମଚଂଦ୍ର ଓ ଦ୍ରାବିଡ଼ ରାଜା ରାବଣ ମଧ୍ୟରେ ହୋଇଥିବା ଯେଉଁ କାହାଣୀ ବର୍ଣ୍ଣିତ ହୋଇଛି, ତାହା ସମାଜର ଅନ୍ୟାୟ ଓ ଦୁରାଚାରର ବିରୁଦ୍ଧରେ ଚିରଂତନ ପ୍ରତିବାଦର କାହାଣୀ । ମହାଭାରତ ଗ୍ରଂଥରେ ତତ୍କାଳୀନ ସାମଂତ-ବାଦୀ ଆର୍ଯ୍ୟଗୋଷ୍ଠୀର ଆଭ୍ୟଂତରୀଣ ଅଂତର୍ଦ୍ୱଂଦ୍ୱର କାହାଣୀ ଭିତରେ ବି ସଂଗ୍ରାମ-ଶୀଳ ମଣିଷ ଚରିତ୍ରର ବହୁ ଉଜ୍ଜଳ ଦୃଷ୍ଟାଂତ ଲିପିବଦ୍ଧ । ଜାତକ ଗ୍ରଂଥରେ ବୋଧିସତ୍ତ୍ୱଂକର ଉପାଖ୍ୟାନ ଗୁଡ଼ିକରେ ପ୍ରାଣୀ ଜୀବନର ଆଦର୍ଶ ଚରିତ୍ରଛଡ଼ା ଆଉ କିଛି ନାହିଁ । ବିଶ୍ୱ ସାହିତ୍ୟ ଭଂଡାରରେ ପୁରାତନ ଗ୍ରଂଥରାଜି ପଢିଲେ ସମକାଳୀନ ଲେଖକମାନଂକ ମନରେ ସମାଜପ୍ରତି କି ପ୍ରକାର ଗଭୀର ଦାୟିତ୍ୱବୋଧ ପୂରି ରହିଥିଲା, ତାହା ହୃଦୟଂଗମ କରିହୁଏ ।

ପୃଥିବୀର ବିଭିନ୍ନ ଦେଶରେ ସେଇସବୁ ଆଦିମ ସାହିତ୍ୟ ସୃଷ୍ଟିହେବାର ହଜାର ହଜାର ବର୍ଷପରେ ସମାଜର ପୁରୁଣା ଢାଂଚାରେ ବହୁ ପରିବର୍ତ୍ତନ ଓ ବିବର୍ତ୍ତନ ସାଧିତ ହୋଇ ମଧ୍ୟ ସାହିତ୍ୟ ସୃଷ୍ଟିରେ ସେଇ ସବୁକାଳୀନ ଆଦର୍ଶର ପରିବର୍ତ୍ତନଗତ କୌଣସି ପ୍ରକାର ଆବଶ୍ୟକତା ଆସିନାହିଁ । ଅନ୍ତପର୍ଯ୍ୟନ୍ତ ସାହିତ୍ୟିକର ସମାଜପ୍ରତି ଗୋଟାଏ "କମିଟମେଂଟ" (Commitment) ବା ଉତ୍ତରଦାୟିତ୍ୱ ଉପରେହିଁ ସାହିତ୍ୟ ସୃଷ୍ଟି ଚାଲିଚି । ସେଇ କମିଟମେଂଟକୁ ଯିଏ ଯେତେଦୂର ହୃଦୟଙ୍ଗମ କରୁଚି ସେ ସେତିକି ପ୍ରଗ-ଶିଳ ଏବଂ ସାର୍ଥକ । ଉକ୍ତ "କମିଟମେଂଟ" କଥାଟାକୁ ଅଜ୍ଞତା ଦୋଷରୁ ଉପଲବ୍ଧି କରି ନପାରି ଏପ୍ରସଙ୍ଗରେ କେତେକ ଲେଖକ ମନୋରଂଜନ ଉଦ୍ଦେଶ୍ୟରେ ସାହିତ୍ୟ ରଚନା କରାଯାଏ ବୋଲି ବାହାଦୁରୀ ମାରୁଛଂତି ।

ଦେଖିବାକୁଗଲେ ସେଇ ମନୋରଂଜନ ସାହିତ୍ୟର ପରିପ୍ରସର ଆଜିର ଓଡ଼ିଆ ସାହିତ୍ୟରେ ଖୁବ ବେଶୀ । ଆଧୁନିକ ଓଡ଼ିଆ ପତ୍ରପତ୍ରିକାରେ ପ୍ରକାଶିତ ଅଧିକାଂଶ ଗଳ୍ପ କବିତାର ଲେଖକମାନେ ମନୋରଂଜନ ଉଦ୍ଦେଶ୍ୟରେ ଲେଖଂତି ଏବଂ ସମ୍ପାଦକମାନେ ମଧ୍ୟ ପାଠକମାନଂକ ମନୋରଂଜନ ଉଦ୍ଦେଶ୍ୟରେ ସେଗୁଡ଼ିକ ନିଜ ପତ୍ରପତ୍ରିକାରେ ସ୍ଥାନ ଦିଅଂତି । ଏଇଭଳି ମନୋରଂଜନମୂଳକ ଚଟିବହିର ଆଧୁନିକ କାଳର ଅନଗ୍ରସର ଓଡ଼ିଆ ସାହିତ୍ୟରୁ ଯେ କେବେ ଦୂରହେବ ତାହା ଅବଶ୍ୟ କହି ହେଉନାହିଁ । ତଥାପି ଏଇ ତଥାକଥିତ ମନୋରଂଜନ ସାହିତ୍ୟ ଯେ ଆମକୁ ପୃଥିବୀର କେଉଁ ଅନ୍ଧାରୀ ରାଜ୍ୟରେ ଆଣି ଛାଡ଼ିଦେଲଣି, ତାହା ଉପଲବ୍ଧି କଲେ ଅବସାଦର ସୀମା ରହେନାହିଁ ।

ସୌଭାଗ୍ୟକୁ ହେଉ ବା ଦୁର୍ଭାଗ୍ୟକୁ ହେଉ, ଏଇଭଳି ମନୋରଂଜନ ସାହିତ୍ୟର କାଟତି ଓଡ଼ିଶା ଦେଶରେ କିଛି କମ୍ ନୁହେଁ ଏବଂ ଏଇ କାଟତିକୁ ସର୍ବିକାର ଲୋକପ୍ରିୟତା ତଥା ପ୍ରତିଷ୍ଠା ବୋଲି ଧରି ନିଆଯାଏ । କେତେକ ପ୍ରକାଶକଂକ ମତରେ ଏଇଭଳି ମନୋରଂଜନ ସାହିତ୍ୟ ଜରିଆରେ ଦେଶବାସୀଂକୁ ପତ୍ରପତ୍ରିକା ପଢିବାରେ ଅଭ୍ୟସ୍ତ କରାଇପାରିଲେ, ପରେ ସେମାନଂକ ପାଖରେ ଉଚ୍ଚାଂଗ ସାହିତ୍ୟ ପରିବେଷଣ କରିବାଲାଗି ସୁଯୋଗ ଆସିବ ।

ଯେଉଁ ପ୍ରକାଶକ ବନ୍ଧୁ ଏବଂ ତାଂକର ସମର୍ଥକ ଏଇପ୍ରକାର ଯୁକ୍ତିଦ୍ୱାରା ଆତ୍ମପକ୍ଷ ସମର୍ଥନ କରୁଛଂତି, ସେମାନେ ମନେରଖିବା ଉଚିତ ଯେ, ଓଡ଼ିଆ ସାହିତ୍ୟ ଆଜି ଏ ଦେଶରେ ନୂଆ ସୃଷ୍ଟି ହୋଇନାହିଁ କିଂବା ଏଇ ସାହିତ୍ୟ

ଏ ଯୁଗରେ ଆଂତର୍ଜାତିକ ମାନଦଂଡକୁ ଏଡ଼ାଇ ଚଳିପାରେନା । ଅତୀତରେ ଏଇ ସାହିତ୍ୟ ପୃଥିବୀର ଟଂଡା ରାଜ୍ୟରେ ସ୍ୱୀକୃତ ପାଇବାକୁ ଯେତକ ହକ୍‌ଦାର ଥିଲା, ଆଜିମଧ୍ଯ ସେତକ ଦାବୀ କରିବା ତା' ପକ୍ଷରେ ଅସମୀଚୀନ ନୁହେଁ । କାରଣ ଏଇ ସାହିତ୍ୟର ପୃଷ୍ଠଭୂମିକୁ ଚାହିଁଲେ ସେଠାରେ ଯେଉଁ ମଣି ମୁକ୍ତା ଝଲସିତ ହୁଏ, ତାହା ପୃଥିବୀର ଯେକୌଣସି ଗଂତାଘରେ ସଂରକ୍ଷିତ ହେବାକୁ ଯୋଗ୍ୟ ।

କାବ୍ୟ-ସଂପଦ ଦୃଷ୍ଟିରୁ ଆମ ପ୍ରାଚୀନ ସାହିତ୍ୟରେ ଭକ୍ତକବି ଜଗନ୍ନାଥ, ବଳରାମ ଓ ଶାରଳା ଦାସଙ୍କ ଗଣ-ସାହିତ୍ୟର ଉଜ୍ଜ୍ୱଳ ପ୍ରତିଭା ଯେଉଁପରି ଦୀପ୍ତିମଂତ ସେଇପରି ମଧ୍ଯ କବି-ସମ୍ରାଟ ଉପେଂଦ୍ରଭଂଜ ଓ ଦୀନକୃଷ୍ଣ ପ୍ରଭୃତିଂକ ରଚିତ ପାଂଡ଼ିତ୍ୟପୂର୍ଣ୍ଣ କାବ୍ୟ ବିଭବରେ ତାହା ଋଦ୍ଧିମଂତ । ଆଧୁନିକ ଯୁଗ ସାହିତ୍ୟରେ ଶ୍ରେଷ୍ଠତମ ବିଭୂତିରୂପେ ପରିଚିତ ଗଳ୍ପସମ୍ଭାର ଦୃଷ୍ଟିରୁ ମଧ୍ଯ ଏଇ ସାହିତ୍ୟକୁ ବ୍ୟାସକବି ଫକୀରମୋହନ ସେନାପତି ବିଶ୍ୱ ସ୍ୱୀକୃତିର ଯେଉଁ ସୋପାନ ପର୍ଯ୍ୟଂତ ଆଗେଇ ନେଇଥିଲେ, ତାହା ବିଚାର କରି ଦେଖିଲେ ବର୍ତ୍ତମାନ ଆମ ଭାଷା ସାହିତ୍ୟରେ ଗଳ୍ପ ଉପନ୍ୟାସ ଓ କାବ୍ୟ କବିତାର ପ୍ରସାର ପାଇଁ ଯେ ଗୋଟାଏ ପ୍ରକାର ଆଂଦୋଳନ କାହିଁକି ସୃଷ୍ଟି କରିବାକୁ ପଡୁଛି, ତାହା ଭାବି ବିସ୍ମିତ ହେବାକୁ ପଡ଼େ । ତଥାପି ବାସ୍ତବତା ଦୃଷ୍ଟିରୁ ଏହାହିଁ ଆଜିର ଓଡ଼ିଆ ପତ୍ରପତ୍ରିକାର ସମସ୍ୟା ଏବଂ ଏହାକୁ କେତେକାଂଶରେ ମାନିନେବାକୁ ହିଁ ପଡ଼ିବ । କିଂତୁ ମାନିନେବାକୁ ହେବବୋଲି ଯେ ଆମର ରୁଚିକୁ ବିକୃତ ବିକଳାଂଗ କରି ସାହିତ୍ୟ ନାମରେ ଆମକୁ ପୃଥିବୀବ୍ୟାପୀ ସ୍ୱୀକୃତ ସ୍ତରରୁ ପଛକୁ ଠେଲି ଦିଆଯାଉଥିବ, ଏହା କଦାପି ବରଦାସ୍ତ କରାଯାଇ ନପାରେ ।

ପୃଥିବୀର ସବୁ ସାହିତ୍ୟରେ ସଂପାଦକମାନେ ହିଁ ଲେଖକ ତିଆରି କରଂତି । ପ୍ରକାଶକମାନେ ବ୍ୟବସାୟଜୀବୀ ହୋଇଥିବାରୁ ସେମାନେ ସାହିତ୍ୟର ମାନଦଂଡ଼କୁ ସବୁବେଳେ ନିଜ ନିଜର ଲାଭ ଓ ହାନିର ପାଖଆଡ଼କୁ ସୁବିଧା ଅନୁସାରେ ଦୋହଲାଇବାକୁ ଚେଷ୍ଟା କରଂତି । ତେଣୁ ସେମାନଂକ ହାତରେ ଜାତିଗଠନ ରୂପୀ ମହାନ ଦାୟିତ୍ୱ କଦାପି ଛାଡ଼ି ଦିଆଯାଇ ପାରେନା । ଯେଉଁପରି ଅବସ୍ଥାରେ ଏବଂ ଯେଉଁ କ୍ଷେତ୍ରରେ ଏକାକୀ ବା ଆନୁଷ୍ଠାନିକଭାବେ ପତ୍ରିକା ରହିଥାଆଂତୁ ନା କାହିଁକି, ସଂପାଦକମାନଂକ ଉପରେ ହିଁ ଲେଖକ ଗଠନର ଦାୟିତ୍ୱ ନ୍ୟସ୍ତ କରାଯାଇଛି ।

ଅତୀତରେ ଏଇ ଭାଷାଭାଷୀ ରାଜ୍ୟରେ ବହୁ ଯୁଗ-ଜନ୍ମା ସାହିତ୍ୟିକ ମଧ୍ଯ ସଂପାଦକ ପଦମର୍ଯ୍ୟାଦାରେ ଅଧିଷ୍ଠିତ ହୋଇ ଜାତି ଗଠନରୂପୀ ସାହିତ୍ୟ ସର୍ଜନା

ଦିଗରେ ଲେଖକମାନଂକୁ ତାଲିମ ଦେବା କ୍ଷେତ୍ରରେ ଅଶେଷ କୃତିତ୍ୱର ପରିଚୟ ଦେଇଥିଲେ । ଆଜିମଧ୍ୟ ସଂପାଦନା କ୍ଷେତ୍ରକୁ ଆସିଥିବା ସେଭଳି ଯଶସ୍ୱୀ ସାହିତ୍ୟିକ ମାନଂକର ଅଭାବ ନାହିଁ । ଅଥବା ଯେଉଁମାନେ ବି ସଂପାଦନା କ୍ଷେତ୍ରରେ ଅଛଂତି, ସେମାନେ ଯେ ସେଇ ଗୁରୁଦାୟିତ୍ୱ ଉତ୍ତମରୂପେ ନିର୍ବାହ କରିବାଲାଗି କୌଣସି ଗୁଣରେ ଅସମର୍ଥ, ଏହା କହିବା ଅନୁଚିତ ହେବ । ତେବେ ଏତିକି କହିଲେ ବକ୍ତବ୍ୟଟି ଅପୂର୍ଣ ରହିଯାଉଚି ଯେ, ଆଜିକାର ଓଡ଼ିଆ ସାହିତ୍ୟରେ ସଂପାଦକ ଓ ଲେଖକ ଉଭୟଂକର ସମାଜପ୍ରତି ଦାୟିତ୍ୱବୋଧରେ ଯେଉଁ ଚରମ ଓ ଆତ୍ମଘାତୀ ଶିଥିଳତା ପ୍ରମାଣିତ ହୋଇଚି, ଏବଂ ସଂପାଦକମାନେ ଯେଉଁପରି ଅନେକ କ୍ଷେତ୍ରରେ ପ୍ରକାଶକମାନଂକ ସ୍ୱୀକୃତ ମାନଦଂଡ ପାଖରେ ଆତ୍ମସମର୍ପଣ କରି ଦେଉଚ଼ଂତି, ତାହା ଏଇ ସାହିତ୍ୟର ପ୍ରଗତି ପକ୍ଷରେ କଦାପି ଶୁଭଲକ୍ଷଣ ନୁହେଁ । ଏହାହିଁ ଯଦି ଅବସ୍ଥାଟି ହେଲା, ତାହାହେଲେ ସାହିତ୍ୟ ଦ୍ୱାରା ଜାତି ଗଠନ ହୁଏବୋଲି ଆମେ ଆଜିଯାଏ ଯେଉଁ ଆପ୍ତବାଣୀ ଶୁଣି ଆସିଚେ, ତାହା ବର୍ତ୍ତମାନ ଭୁଲି ଯିବାକୁ ପଡ଼ିବ ।

ମାନବ ସମାଜ ପାଇଁ ନିତ୍ୟ ନୂତନ ରୂପେ ସର୍ଜନା ଚାଲିଥିବା ମନୋ-ରଂଜନ ସାମଗ୍ରୀ ଭିତରେ ସାହିତ୍ୟ, କଳା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅଂତର୍ଭୁକ୍ତ । କିଂତୁ ତାହା ଅନ୍ୟାନ୍ୟ ବିକଳ୍ପ ଉପାଦାନର ସମ ପର୍ଯ୍ୟାୟଭୁକ୍ତ କଦାପି ହୋଇ ପାରେନା । କାରଣ ସାହିତ୍ୟଟି ମନୋରଂଜନର ଏପରି ଏକ ଉତ୍କୃଷ୍ଟ ମାଧ୍ୟମ ଯାହା ମଣିଷର ମନ ଭିତରେ ଥିବା ରୁଚିବୋଧକୁ ଜାଗ୍ରତ କରି ତାକୁ ପୁଣି ନୂଆ ରୀତିରେ ସକଳପ୍ରକାର ମନୋରଂଜନ ସାମଗ୍ରୀର ମୂଲ୍ୟାଂକନ କରିବାକୁ ଶିକ୍ଷା ଦେଇଥାଏ । ମାନସିକ ଶୈଥିଲ୍ୟ, ରୁଚିଶୂନ୍ୟତା ଏବଂ ବିକୃତିଗତ ଅପରିପକ୍ୱତା ଭିତରେ ମଣିଷ ଯେଉଁ ମନୋରଂଜନ ସମଗ୍ରୀ ଗୁଡ଼ିକ ଉପଭୋଗ କରେ, ତାହା ଯେ ପ୍ରକୃତ ଉପଭୋଗ ନୁହେଁ— ଏକଥା ସାହିତ୍ୟ ହିଁ ମଣିଷକୁ ଶିଖାଏ ।

ମହାମତି ଟଲଷ୍ଟୟ କହିଲେ ଯେ, ପିପାସା ଦୂର କରିବାଲାଗି ଅଇଁଠା ପାତ୍ରରେ ପାଣି ପିଇଲେ ପ୍ରକୃତ ସଂତୋଷ ମିଳେନାହିଁ । ଟଲଷ୍ଟୟ ଏକଥା କହିଥିଲେ ବେଶ୍ୟାମାନଂକୁ ଉପଲକ୍ଷଦେବାପାଇଁ, କାରଣ ସେମାନେ ବି ସମାଜର ଅନ୍ୟ ଏକ ପ୍ରକାର ଉପଭୋଗ୍ୟ ସାମଗ୍ରୀ । ଏଠାରେ ରୁଚିଶୂନ୍ୟ ସାହିତ୍ୟ ସଂପର୍କରେ ସେଇ ମହାନ ଉକ୍ତିର ପୁନରୁଦ୍ଧାର କରିବା କୌଣସିମତେ ଅପ୍ରାସଂଗିକ ହେବନାହିଁ ।



## ॥ ସମାଜବାଦୀ ସାହିତ୍ୟ ॥

ଓଡ଼ିଶାର ପୁରାତନ ସାହିତ୍ୟାନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ହୀରକ ଜୟନ୍ତୀ ପାଳିତ ହେଲା । ଏହି ଜୟନ୍ତୀ ଅବସରରେ ସାଧାରଣ ରାଜନୀତିକ ସଭାସମିତି ଭଳି କେତେକ ପ୍ରସ୍ତାବ ଗୃହୀତ ହୋଇଛି । ସେ ଭିତରୁ ଗୋଟିଏ ପ୍ରସ୍ତାବ ହେଲା—ସମାଜବାଦୀ ଢାଂଚାରେ ଓଡ଼ିଆ ସାହିତ୍ୟର ଅଂଗନ୍ୟାସ କରାଯାଉ !

ରାଜନୀତି ଓ ସାହିତ୍ୟ ସଭା ମଧ୍ୟରେ ପାର୍ଥକ୍ୟ ରହିଛି । ରାଜନୀତି ସଭାରେ ବକ୍ତାମାନେ ଯାହା କହନ୍ତି ତା' ସହିତ ସେମାନଙ୍କ ବ୍ୟକ୍ତିଗତ ଆଚରଣ ଏବଂ ସ୍ୱଭାବ ଚରିତ୍ରର ଅନେକଟା ସମ୍ପର୍କ ନଥାଏ । ରାଜନୀତି କରୁଥିବା ଲୋକ ସମସ୍ୟାକୁ ଶୁଣାଇଲାଭଳି କଥା କହନ୍ତି । ରାଜନୀତିବାଲା ସମସ୍ୟାକୁ ତିଆରି କରିବା କଥା, ନୂଆ ଯୁଗ ସୃଷ୍ଟି କରିବା କଥା । କିନ୍ତୁ ଭାରତବର୍ଷରେ ତାହା ହୁଏନାହିଁ । ସେଇହେତୁ ନିଜର ବ୍ୟକ୍ତିଗତ ପରୋଇ ଚରିତ୍ର ଏବଂ ଭାବମୟ ଆଚରଣ ଯାହା ହୋଇଥାଉ ନା କାହିଁକି ସଭାସମିତିରେ କିଂପଟାଙ୍କର କରି ସମସ୍ୟାନୁକୂଳୀନ କଥା ଢ'ପଢ କହି ସେମାନେ ନିଜର ଅସ୍ତିତ୍ୱ ବଂଚାଇ ରଖିବାର ଅପକୌଶଳ କରନ୍ତି ।

କିନ୍ତୁ ସାହିତ୍ୟିକର ଆଚରଣ ଠିକ୍ ସେଇଆ ନୁହେଁ । ସାହିତ୍ୟିକ ହିଁ ସମସ୍ୟାକୁ ଗଢ଼େ । କାଳକୁ ଦିଗ୍‌ଦର୍ଶନ ଦେଲାଭଳି ସାହିତ୍ୟିକ ହିଁ କଥା କହେ । ସାହିତ୍ୟିକର ଉଦ୍‌ବୋଧନ ବାଣୀରେ ଯୁଗ ବଦଳିଯାଏ । ସେଇହେତୁ

ସାହିତ୍ୟକର ବକ୍ତବ୍ୟରେ କପଟାଗ୍ରହ ଏବଂ କୁଂଠିତ ଆଚରଣର ଅବକାଶ ନଥାଏ । ସାହିତ୍ୟକ ଯାହା କହନ୍ତି ତାହାହିଁ ତାର ଲେଖା ଏବଂ କାର୍ଯ୍ୟରେ ପ୍ରତିବିଂବିତ ହୁଏ । ସାହିତ୍ୟକର ଅକପଟ ସ୍ୱଭାବସୁଲଭ ଚରିତ୍ରର ନିଖୁଣ ନିର୍ମଳ ଅଭିବ୍ୟଂଜନାରେ ତାର ଲେଖା ପ୍ରତିଫଳିତ ହୁଏ । ସେ ନିଜେ ଯାହା ନକରେ, ସେଭଳି ଉଦ୍‌ବୋଧନ ଦେବାର ଅଧିକାର ଆପାତତଃ ସାହିତ୍ୟକର ନାହିଁ ।

ଭାରତରେ ସାଂପ୍ରତିକ ରାଜନୀତିରେ ସମାଜବାଦ ଏକ ଆକର୍ଷଣୀୟ ଆର୍ଷବାଣୀ । ସମାଜବାଦ ଶବ୍ଦ ଉଚ୍ଚାରଣ ନକଲେ ଭାରତରେ ରାଜନୀତି ସାହୁଂତେ ସୁଦ୍ଧା ଆଗକୁ ଆଗେଇ ପାରିବନାହିଁ । ସମାଜବାଦ ରାଜନୀତି ପେଷାରେ ଏକ ସ୍ଲୋଗାନ ହୋଇପାରେ, କାରଣ ରାଜନୀତିକ ଆଦର୍ଶରେ ଚରିତ୍ରଗତ ବା ଆଚରଣଗତ ପ୍ରୟୋଗର ପ୍ରଶ୍ନ ନଥାଏ । ଆମଦେଶରେ ସମାଜବାଦୀ ତଥା ନିରୁତା ସାମ୍ୟବାଦୀ ଦଳ ଗୁଡ଼ିକର ମଧ୍ୟ ଏଇଭଳି ଶୋଚନୀୟ ଚରିତ୍ର ସଙ୍କଟ ବିରାଜମାନ କରୁଛି ।

କିଂତୁ ସାହିତ୍ୟକ ଠିକ୍ ସେଇଆ ନୁହେଁ । ସମାଜକୁ ସାହିତ୍ୟର ସବୁଠାରୁ ବଡ଼ ଅବଦାନ ହେଲା ଚରିତ୍ର । ଦେଶରେ ଜାତୀୟ ଚରିତ୍ର ସୃଷ୍ଟି କରିବାଲାଗି ସାହିତ୍ୟକ ହିଁ କେବଳ ସମର୍ଥ ହୋଇପାରେ । ଆଦିମ ପୃଥିବୀରେ ସାହିତ୍ୟିକ ଓ କବି ହିଁ ପ୍ରଥମ ମାନବବାଦୀ ଓ ସମାଜବାଦୀ । ବ୍ୟାଧ ଶରାହତ କ୍ରୌଂଚ ଯୁଗଳର ଆର୍ତ୍ତନାଦରେ ଯେଉଁ ଆଦି ସାହିତ୍ୟ ସୃଷ୍ଟିହେଲା, ତାହାହିଁ ଭାରତୀୟ ସାହିତ୍ୟରେ ପ୍ରଥମ ସମାଜ-ଚେତନାର ବାହକ । ଆଧୁନିକ ବା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବଳିଷ୍ଠ ସମାଜ ସଚେତନତାର ଅଭାବ ନାହିଁ । ଜାତୀୟ ଚରିତ୍ର ଗଠନଲାଗି ଓଡ଼ିଆ ସାହିତ୍ୟ ଏକାକୀ ଭାରତର ଯେ କୌଣସି ଉନ୍ନତ ସାହିତ୍ୟର ସମକକ୍ଷ ହୋଇପାରେ । ପୃଥିବୀରେ ଜାତୀୟ ଚରିତ୍ର ନଥିବା କୌଣସି ଜାତି ବା ଦେଶ ସମାଜବାଦୀ ନଥାଂତି ।

ଆରକ ଜୟନ୍ତୀ ଆଲୋଚନା ସଭାରେ ବିଷୟ ଗୁଡ଼ିକ ମଧ୍ୟରେ ଓଡ଼ିଶାର ଜାତୀୟ ସାହିତ୍ୟର କୌଣସି ବଳିଷ୍ଠ ଦିଗ ଉନ୍ମୋଚନ କରିବାକୁ ଉଦ୍ୟମ ହୋଇନାହିଁ । ଓଡ଼ିଆ ସାହିତ୍ୟରେ ସମାଜବାଦୀ ଯୁଗର ପ୍ରବର୍ତ୍ତନ କୌଣସି ଦୈବବାଣୀ, ସ୍ଲୋଗାନ, ଗୃଣିଗାରୁଡ଼ି ବା ମଂତ୍ରତଂତ୍ର ଦ୍ୱାରା ସମ୍ଭବ ନୁହେଁ । ଆଧୁନିକ ବା ପ୍ରାଚୀନ ଓଡ଼ିଆ ଭାଷା ସାହିତ୍ୟରେ ସମାଜ ସଚେତନ ସାହିତ୍ୟକୃତି ଗୁଡ଼ିକ ଖୋଜି ବାହାର କରିବାକୁ ପଡ଼ିବ ଏବଂ ସମାଜ ସଚେତନତା ଦୃଷ୍ଟିରୁ ସମଗ୍ର ସାହିତ୍ୟ ଭଂଡାରର ନବ ଅନ୍ୱେଷଣ କରାଯିବ ।

ସାମୂହିକଭାବେ ଦେଖିଲେ ଓଡ଼ିଆ ସାହିତ୍ୟରେ ଲେଖକ ଏବଂ ଆଲୋଚକ ଉଭୟଙ୍କ ଦୃଷ୍ଟିଭଂଗୀ ଆଜିଯାଏ ସାହିତ୍ୟ ତଥା ସାଂସ୍କୃତିକ ବିଶ୍ୱରଧାରାରେ ଆଦର୍ଶଗତ ଦିଗ ପରିବର୍ତ୍ତନ ଏବଂ ନୂଆ ଜୀବନ-ଜିଜ୍ଞାସାଆଡ଼େ ଆଂତରିକ ବ୍ୟଗ୍ରତାର ସହିତ ଆଗେଇ ପାରିନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟ ମଧ୍ୟରେ ସାମଂତବାଦୀ ଚିତ୍ତ-ଚରିତ୍ର ମଧ୍ୟ ଲୁକ୍‌କାୟିତ । ସ୍ୱାଧୀନତା ପଛକୁ ଆଧୁନିକ ଓଡ଼ିଆ ସାହିତ୍ୟରେ ଖାଲି ଶୈଳୀଗତ ପରୀକ୍ଷାନିରୀକ୍ଷା କିଛି କମ୍ ନୁହେଁ । ଚିଂତା, କଳ୍ପନା ଏବଂ ଭାବମୟ ଆବେଗ ମାଧ୍ୟମରେ ସାମଂତବାଦୀ ରକ୍ଷଣଶୀଳ ଚରିତ୍ରକୁ ଅଡ଼େଇ ଦେବାଲାଗି ଏପର୍ଯ୍ୟଂତ କୌଣସି ବୈପ୍ଲବିକ ଅବସର ଓଡ଼ିଆ ସାହିତ୍ୟିକର ପାଖକୁ ଆସିନାହିଁ । ଓଡ଼ିଆ ସାହିତ୍ୟରେ ବୈଜ୍ଞାନିକ ବିଶ୍ୱରର ବିକାଶ ପଥରେ ଅନେକ କେବଳ ପ୍ରଂଏତଂକ ଯାଏ ଆଗେଇଆସି ପଛକୁ ଫେରିଛଂତି । ଆଉରି ଅନେକ ନୂଆ ଜୀବନ ଦର୍ଶନର "ପ୍ରଜ୍ଞା" ଖୋଜିବାଲାଗି କୌଣସି ଅଲୌକିକ ଶକ୍ତିଆଡ଼କୁ ଧାଇଁଛଂତି । ଓଡ଼ିଆ ସାହିତ୍ୟରେ ଭିନ୍ନ ରୀତିରେ ଏବେ ମଧ୍ୟ ରୀତି ଯୁଗର ଅନ୍ତମାନସ ଚେତନା ବଂଚି ରହିଛି ।

ସମାଜରେ ସାହିତ୍ୟିକହିଁ ଶୀର୍ଷତମ ଶ୍ରେଣୀର ବୌଦ୍ଧିକ ପ୍ରାଣୀ । କିଂତୁ ସେଇ ବୌଦ୍ଧିକତା ଅନାପେକ୍ଷିକ ନୁହେଁ । ଜନମାନବର ଅନୁଭୂତ ଏବଂ ସାଧାରଣ ଆବେଷ୍ଟନୀ ମଧ୍ୟରୁ ସେଇ ବୌଦ୍ଧିକ ଜୀବନ ଦର୍ଶନର ଜନ୍ମ । ତାହା ସାହିତ୍ୟିକର ଏକାଂତ ନିଜସ୍ୱ ବ୍ୟକ୍ତି ପରିଚୟ ନୁହେଁ । ଭାରତୀୟ ଜନମାନବର ସାମୂହିକ ଜୀବନ-ଜିଜ୍ଞାସା ହେଲା ସମାଜବାଦ । ସମସାମୟିକ ସମାଜଚେତନା ସହିତ ଯେଉଁମାନେ ନିବିଡ଼ଭାବେ ଜଡ଼ିତ ସେମାନଂକ ସାହିତ୍ୟରେ ସମାଜବାଦର ପ୍ରତିଛବି ନିଶ୍ଚୟ ଉଜ୍ଜଳ । ବିଗତ ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ଏଭଳି ବହୁ ବଳିଷ୍ଠ ରଚନାର ଅଭାବ ନାହିଁ । କିଂତୁ ଏହା ସାମଗ୍ରିକଭାବେ ଓଡ଼ିଆ ସାହିତ୍ୟ ଓ ସାଂସ୍କୃତିକ ଚିଂତାର ଗୁଣ ପରିବର୍ତ୍ତନ କରି ପାରିଛି ?

ସମାଜବାଦୀ ସାହିତ୍ୟର ପ୍ରସାରଲାଗି ସମ୍ମିଳନୀ ମଂଡପରୁ ଡ଼ାକରା ଦେଇ-ଥିବା ଉତ୍କଳ ସାହିତ୍ୟ ସମାଜ ଏ ଦିଗରେ ଆତ୍ମନିରୀକ୍ଷଣ କରିବା ଉଚିତ । ତା' ନହେଲେ ଜଗନ୍ନାଥଂକ ନେତର ଧୂଳିକଣାରୁ କଣ ଓଡ଼ିଶାରେ ସମାଜବାଦୀ ସାହିତ୍ୟ ଖସିପଡ଼ିବ କି ?

●



## ॥ ଶିଳ୍ପ ବିପ୍ଳବ ଓ ସାହିତ୍ୟ ॥

ସମସାମୟିକ ସାହିତ୍ୟ ଉପରେ ଶିଳ୍ପଭିତ୍ତିକ ଜୀବନର ପ୍ରଭାବ ଆଲୋଚନା କରିବାପାଇଁ ରାଉରକେଲା ଶିଳ୍ପ ସହରରେ ଦୁଇଦିନ ବ୍ୟାପୀ ସର୍ବଭାରତୀୟ ସ୍ତରରେ ଏକ ସମ୍ମିଳନୀର ଆୟୋଜନ ହୋଇଥିଲା । ଏଭଳି ସମ୍ମିଳନୀର ପରି-କଳ୍ପନା ଓଡ଼ିଶା କାହିଁକି ସାରା ଭାରତରେ ପ୍ରଥମ କହିଲେ ଅତ୍ୟୁକ୍ତି ହେବନାହିଁ ।

ସ୍ୱାଧୀନତା ପରଠୁ ଶିଳ୍ପାୟନ ଦିଗରେ ଦେଶ ଆଗେଇ ଚାଲିଚି । ବହୁ ଶ୍ରେଷ୍ଠବଡ଼ କାରଖାନା ତିଆରି ହୋଇଚି । ନଦୀରେ ବଡ଼ବଡ଼ ବଂଧ ପଡ଼ିଚି । ବାଣିଜ୍ୟ କେଂଦ୍ର ଓ ବଂଦର ସୃଷ୍ଟି ହୋଇଚି ଦେଶର ବିଭିନ୍ନ ଅଂଚଳରେ । ପୂର୍ବେ ଆମେ ନିର୍ଭର କରୁଥିଲୁ କୃଷି ଉପରେ । ଏବେ ଶିଳ୍ପୋଦ୍ୟୋଗ ଉପରେ ନିର୍ଭର-ଶୀଳ କହିଲେ ଚଳେ । କୃଷି ଭିତ୍ତିକ ଜୀବନରେ ଆମେ ଯେଉଁ ସମସ୍ୟାର ସମ୍ମୁଖୀନ ହେଉଥିଲୁ, ଇଦାନିଂ ସେଇ ସମସ୍ୟା ଜଟିଳଆକାର ଧାରଣ କରିଚି । ଏପରିକି ଅନେକସ୍ଥଳରେ ନୂତନ ସମସ୍ୟା ମଧ୍ୟ ଜନ୍ମଲାଭ କରିଚି । ଅତୀତରେ ଯେଉଁ ପଂଥା ଅବଲଂବନ କରି ଆମେ ସମସ୍ୟାର ସମାଧାନ କରୁଥିଲୁ; ଯେଉଁ ମୂଲ୍ୟବୋଧର ମାନଦଂଡରେ ଜୀବନର ପ୍ରତ୍ୟେକ ବିଭାଗକୁ ପରଖି କରୁଥିଲୁ, ଏବେ ସେଇ ପଂଥା, ସେଇ ମୂଲ୍ୟବୋଧର ମାଧ୍ୟମରେ ଆଜିର ସମସ୍ୟାବହୁଳ ଜୀବନକୁ ବୁଝିବା ଅସମ୍ଭବ ହୋଇପଡୁଚି । ଏଥିପାଇଁ ଲୋଡ଼ା ନୂତନ ପଦ୍ଧତି, ନୂତନ ମୂଲ୍ୟବୋଧ ଓ ନୂତନ ଦୃଷ୍ଟିକୋଣ ।

ସମାଜର ଏଇ ପରିବର୍ତ୍ତିତ ପରିସ୍ଥିତିରେ ସାହିତ୍ୟର ଭୂମିକା କଣ ? ଏହାହିଁ ଆଜିର ପ୍ରଶ୍ନ । ସାହିତ୍ୟିକ ଏଇ ସମାଜର ଜୀବ । ଏଇ ସମାଜର ପ୍ରତ୍ୟେକ କର୍ମ ସହିତ ତା'ର ଜୀବନର ଅଂଶାଂଶୀ ସମ୍ପର୍କ । ତେଣୁ ଜୀବନଦ୍ରଷ୍ଟା ରୂପେ ସେ ଏଇ ପରିବର୍ତ୍ତନ ପ୍ରତି ଉଦାସୀନ ରହିପାରେନା ! ଏଇ ପରିବର୍ତ୍ତନ ବ୍ୟକ୍ତି ଓ ସମାଜ ଜୀବନ ଉପରେ କେଉଁ ପ୍ରତିକ୍ରିୟା ସୃଷ୍ଟି କରିଚି, ନୂତନ ଓ ପୁରାତନ ପରିବେଶର ସଂଘର୍ଷରେ ପ୍ରଚଳିତ ରୁଚି ଓ ମୂଲ୍ୟବୋଧ କିପରିଭାବେ ବିଘଟିତ ହୋଇଯାଉଚି; ନିଜର ଅନୁଭୂତିର ମାଧ୍ୟମରେ ତାର ଚିତ୍ରକରିବାର ସ୍ୱଭାବ ରଖେ ସାହିତ୍ୟିକ । ଏଇ କର୍ତ୍ତବ୍ୟକୁ ସେ କିପରିଭାବେ ପାଳନ କରୁଚି, ଦେଖି ତାହା ଲକ୍ଷ୍ୟ କରିବାର କଥା ।

ଶିଳ୍ପାୟନର ପ୍ରଭାବ ଓ ତାହାର ସମସ୍ୟାବଳୀକୁ ଏଡ଼ିଦେଇ ଗତାନୁଗତିକ ପ୍ରବାହରେ ଭାସିଗଲେ ସମାଜର ପ୍ରଗତି ବ୍ୟାହତ ହେବ । ସେଇଭଳି ହା-ହୁତାଶ ଚିତ୍କାର କରି ତହିଁରେ ନିଜର ଗତିପଥ ନିର୍ଣ୍ଣୟ କରି ନପାରିଲେ ଆମେ ନିଜର ଅସ୍ତିତ୍ୱ ହରାଇ ବସିବା । ଅନ୍ୟପକ୍ଷରେ ଆଂତର୍ଜାତିକ ଚେତନା କ୍ଷେତ୍ରରେ କେବଳ ବାହ୍ୟାଡ଼ମ୍ବରରେ ଆତ୍ମହରା ହୋଇ ସେ ମଧ୍ୟରେ ନିଜର ସ୍ୱରୂପକୁ ଠାବ ନକରି ପାରିଲେ, ଶେଷରେ ଆମର ଅସ୍ତିତ୍ୱ ରକ୍ଷାଲାଗି ଖାଲି ଅରଣ୍ୟ ରୋଦନହିଁ ସାର ହେବ । ଏଣୁ ଶିଳ୍ପ ପ୍ରଗତିର ଭିତ୍ତି ଭୂମିରେ ଏକ ସୁଂଦର ଏବଂ ବଳିଷ୍ଠ ସମାଜ ଗଠନ କରି ଜାତିକୁ ବିକାଶ ପଥରେ ଆଗେଇ ନବାପାଇଁ ସାହିତ୍ୟିକର ସକ୍ରିୟ ଭୂମିକା ଉପରେ ତାକୁ ଦୃଢ଼ଭାବେ ଦଂଡାୟମାନ ହେବାକୁ ପଡ଼ିବ ।

ଯଦି ଶିଳ୍ପ ବିପ୍ଲୋବୋତ୍ତର ଯୁଗକୁ ଆଜିର ସାହିତ୍ୟର ଭିତ୍ତିଭୂମି ରୂପେ ଧରାଯାଏ, ତେବେ ପୃଥିବୀରେ ଶିଳ୍ପାୟନ ଫଳରେ ଯେଉଁ ବିରାଟ ସମସ୍ୟାବଳୀର ଉଦ୍‌ଭବ ହୋଇଚି, ତା'ର ବ୍ୟାପକ ଚିତ୍ର ଓଡ଼ିଆ ସାହିତ୍ୟରେ କାହିଁ ? ବିଜ୍ଞାନର ଅଗ୍ରଗତି ଯୋଗୁ ମୂଲ୍ୟ ହରାଉଥିବା ଧ୍ୟାନଧାରଣା ଓ ବିଶ୍ୱାସ ବିରୁଦ୍ଧରେ ସାହିତ୍ୟର ସ୍ୱର ଆଜିଯାଏ ବଳିଷ୍ଠ ହୋଇ ପାରିନାହିଁ । ନୂତନ ସମସ୍ୟା, ସମସ୍ୟାର ଜଟିଳତା ଓ ଘାତପ୍ରତିଘାତକୁ ସ୍ପଷ୍ଟ ଓ ନିର୍ଭୀକଭାବେ ସମ୍ମୁଖୀନ ହେବାପାଇଁ ଆଜିର ସାହିତ୍ୟିକ ପଶ୍ଚାତ୍‌ପଦ । କେଉଁ କାରଣରୁ ତାର ଏ ଉଦାସୀନତା ? ଏଇ ସମସ୍ତ କାରଣ ଅନୁଶୀଳନ କରିବା ନିତାଂତ ପ୍ରୟୋଜନ ।





## ॥ ସାହିତ୍ୟ ପେଷା ॥

ଦୁଧ ବୁଲେଇ ବିକ୍ରୀ ହୁଏ, କିନ୍ତୁ ମଦ ଦୋକାନରେ ମୂଲଗୁଲ ବି ଚଳେନା । ଅର୍ଥନୈତିକ ଜୀବନର ସବୁ ଆଶ୍ରା, ସବୁ ଅବଲଂବନପରି ସାହିତ୍ୟକୁ ଯଦି "ପେଷା" ରୂପେ ଧରାଯାଏ— ତାହାହେଲେ ସେଇ ବଢ଼ଂବନ୍ତ ଜୀବିକାର ସାମାଜିକ ମୂଲ୍ୟାୟନଲାଗି ଆମକୁ ଆଉରି କେତେକାଳଧରି ଅପେକ୍ଷା କରିବାକୁ ପଡ଼ିବ ।

ସାହିତ୍ୟିକ ସବୁଦିନପରି ଆଜି ବି ସମାଜରେ ସବୁ ଚେତନାପ୍ରାପ୍ତ ପ୍ରାଣୀଙ୍କୁ ଜୀବନର ସ୍ୱାଦ ଚଖାଇବାରେ ବ୍ୟସ୍ତ । ଯେତେବେଳେ ମଣିଷ ଜୀବନକୁ ହତାଶା ଓ ଅବସାଦ ଘେରିବସେ, ସେତେବେଳେ ସେ ନୂଆ ପ୍ରାଣ-ପ୍ରେରଣା ପାଇଁ ସାହିତ୍ୟିକର ମୁହଁକୁ ଅନାଇ ରହେ । ଆଖୁ କିଆରିରେ ବଳିଷ୍ଠ ଉର୍ବର ମାଟି ଏବଂ ସାର ପିଡ଼ିଆର ପ୍ରୟୋଜନ ହୁଏ, କିନ୍ତୁ ସମାଜରେ ସାହିତ୍ୟିକକୁ ବଂଚିବା ପାଇଁ ନ୍ୟୂନତମ ଖୋରାକ ଯୋଗାଇବାର ସ୍ୱୀକୃତି ଦିଆଯାଇ ପାରେନା । ଗାଈ ପେଟରେ କୁଣ୍ଠା ପଶିଲେ ଦୁଧ ବାହାରିପଡ଼ିଲା ଭଳି ସାହିତ୍ୟିକକୁ ଘାସ ବା ନଡ଼ା ଖୁଆଇ ସମାଜ ତା'ଠାରୁ ଅମୃତ ଆଶାକରିବା ନିରର୍ଥକ !

ମନୀଷୀ କାଲମାର୍କସଂକ ଅପେକ୍ଷା ପୃଥିବୀରେ ଶୋଷଣବାଦର ଚରମ ବ୍ୟାଖ୍ୟାକାର ଆଉ କେହି ନାହାଁନ୍ତି । ସାହିତ୍ୟ ପେଷାରେ "ଏକ୍ସପ୍ଲଏଟେସନ"ର ସୀମା ସରହଦ ଉପରେ ଆଲୋକପାତ କରିବାକୁ ଗଲାବେଳେ, ସେ ଙ୍କ ଆଉଟି ଗୋଟିଏ ଉପପ୍ରଦ ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିବା ନଜରରେ ପଡ଼ିଯାଏ । ସେ କହିଛନ୍ତି :

"ନିଜକୁ ବଞ୍ଚାଇବାକୁ ଓ ଲେଖିବା କାମକୁ ଅବ୍ୟାହତ ରଖିବାପାଇଁ ଲେଖକକୁ ଉପାର୍ଜନ କରିବାକୁ ପଡ଼େ । କିନ୍ତୁ ଉପାର୍ଜନ କରିବାପାଇଁ ଯେ ତାକୁ ବଞ୍ଚିବାକୁ ପଡ଼ିବ ଓ ଲେଖାଲେଖି କରିବାକୁ ହେବ, ଏହା କଦାପି ସ୍ମରଣୀୟ ହେବନାହିଁ ।

ଲେଖକ କେବେହେଲେ ହେଲେ ତା'ର ଲେଖିବାବୃତ୍ତିକୁ ଏକ 'ଉପାୟ' ବୋଲି ମନେ କରେନାହିଁ । ଲେଖିବାଟା ହେଲା ତା'ର ଶୀର୍ଷ ଉଦ୍ଦେଶ୍ୟ । ଲେଖାଯେ ଏକ 'ଉପାୟ' ଏଇ କଥାରେ ତାର ଏତେ କମ ବିଶ୍ୱାସଯେ ଦରକାର ପଡ଼ିଲେ, 'ବଞ୍ଚିବାକୁ ବିପନ୍ନ କରି' ସେ ଲେଖିବା ଧାରାକୁ ବଜାୟ ରଖେ । ଧର୍ମ ପ୍ରଚାରକମାନଙ୍କ ପରି 'ମଣିଷ ଅପେକ୍ଷା ଭଗବାନଙ୍କୁ ବେଶୀ ମାନ୍ୟକର' — ଏଇ ମତରେ ସେ ସମ୍ପୂର୍ଣ୍ଣ ବିଶ୍ୱାସୀ । ଭଗବାନଙ୍କୁ ମାନିବାକୁଯାଇ ଯେଉଁ ମଣିଷକୁ ସେ ଉପେକ୍ଷା କରେ, ସେମାନଙ୍କ ମଧ୍ୟରେ ଲେଖକ ନିଜେ ବି ରହିଥାଏ — ଏବଂ ଆଏ ତାର ସମସ୍ତ ମାନବିକ ପ୍ରୟୋଜନ ଏବଂ ଆଶା ଆକାଂକ୍ଷା ।

ମୁଁ ଜଣେ ଦର୍ଜୀକୁ ଗୋଟାଏ ପାରସ୍ୟ ଦେଶୀୟ ଫର କୋଟ୍ ତିଆରି କରିବାକୁ ଦେଲି । କିନ୍ତୁ ସେ ଗୋଟାଏ ରୋମାନ 'ଟୋଗା' ତିଆରି କରି ମତେ ପିନ୍ଧେଇ ଦେଲା । ସୌନ୍ଦର୍ଯ୍ୟର ବାହ୍ୟିକ ନିୟମାନୁସାରେ ପରିଚାଳିତ ହୋଇ ଦର୍ଜୀଟି ରୋମାନ 'ଟୋଗା' ତିଆରି କଲା, କାରଣ ପାରସ୍ୟ ଦେଶୀୟ କୋଟ ଅପେକ୍ଷା ତାହା ମତେ ବେଶୀ ମାନିବ । ନିଷ୍ଠାର ପ୍ରଥମ ସର୍ତ୍ତ ଯାହା, ସେଥିରେ ବ୍ୟବସାୟୀ କାରବାର ଅିଠିମାନାରେ ଅଚଳ ।"

ମନୀଷୀ କାର୍ଲ ମାର୍କସଙ୍କର ଏବଂବିଧ ବିଶ୍ଳେଷଣ ଆଜ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ଉପରେ ବେଶ୍ ପ୍ରଯୁଜ୍ୟ । ଓଡ଼ିଶାଭଳି ଉପଯୁକ୍ତ ସାକ୍ଷରତା ବିହୀନ, ଦରିଦ୍ର

ଏବଂ ଅନୁନ୍ନତ ରାଜ୍ୟରେ ସାହିତ୍ୟ ପତ୍ରିକାର ସମ୍ପାଦକମାନେ ବାସ୍ତବରେ କଣ ଲେଖକମାନଙ୍କୁ 'ଏକ୍‌ସପ୍ଲଏଟେସନ' କରି ନିଜର ଭରଣପୋଷଣ କରନ୍ତି ?

ଗ୍ରପ୍‌ଖାନାକୁ ଟଙ୍କା ଦେବାକୁ ପଡ଼ିବ, ଛବି କିଣାଯିବ, ବ୍ଲକ ତିଆରି ହେବ, ବିଜ୍ଞାପନ ବାହାରିବ, ଏଜେଣ୍ଟମାନଙ୍କୁ କମିଶନ ଦେବାକୁ ପଡ଼ିବ ଏବଂ ପତ୍ରିକା ବ୍ୟବସାୟକୁ ଉପଯୁକ୍ତ ରୀତିରେ ସୁପରିଚାଳିତ କରିବାଲାଗି ପଇସା ଖର୍ଚ୍ଚ ହେବ — ଏଇସବୁ ଲଗାଣ ପୁଞ୍ଜି (Investment)କୁ ଅଗ୍ରାଧିକାର ନଦେଲେ ପତ୍ରିକା ବାହାରିବ କେମିତି ? ଖାଲି ଲେଖକର ଲେଖାଗୁଡ଼ିକ ହସ୍ତଗତ ହୋଇଗଲେ ପତ୍ରିକାଟି 'ମାନୁଫାକ୍‌ଚର' ହୋଇଯାଏ ନାହିଁ । କାରଣ ସମ୍ପାଦକ ପୋଥି ଲେଖକ ନୁହନ୍ତି ଯେ, ତାଳପତ୍ର ଖେଦାରେ ପ୍ରଣେତା ପ୍ରବରଙ୍କୁ ଚିର ସ୍ମରଣୀୟ କରିଦେଇ ପାରିବେ । ବ୍ୟବସାୟିକ ଭାଷାରେ ଲେଖା ବା ସାହିତ୍ୟକୁ କଞ୍ଚା ମାଲ ବା ତିଆରି ମାଲ (ଫିନିସଡ଼ ପ୍ରଡ଼କ୍‌ଟ) ଯାହା କିଛି କହ — ସେଥିପାଇଁ ବଜାରର ଚାହିଦା ଉପରେହିଁ ଲଭ କ୍ଷତି ନିର୍ଭର କରୁଛି । ଲେଖକ ଯଦି କଞ୍ଚା ମାଲ ହିସାବରେ ସମ୍ପାଦକଙ୍କୁ ଲେଖା ବିକ୍ରୀକରି ନିଶ୍ଚିନ୍ତ ହୋଇ-ଯାଏ, ତାହାହେଲେ ସେ ଲେଖା ମଧ୍ୟ ସେଇପରି ଉଚ୍ଚ ଦରର ହେବା ଉଚିତ— ଯାହାକି ତିଆରି ମାଲ (ଫିନିସଡ଼ ପ୍ରଡ଼କ୍‌ଟ) ରୂପେ ବଜାରରେ ଚାହିଦା ସୃଷ୍ଟି କରିବାକୁ ସମର୍ଥ ହୋଇ ପାରିବ ।

ଆଜିର ସଂସାରରେ ବ୍ୟବସାୟୀ ସଂସ୍ଥା ଗୁଡ଼ିକର ଟେକନିକାଲ (ବୈଷୟିକ) ଅଗ୍ରଗତି ଦୃଷ୍ଟିରୁ ପତ୍ରିକା ପ୍ରକାଶନକୁ ନିଶ୍ଚୟ ଏକ ବ୍ୟୟସାପେକ୍ଷ ପ୍ରୋଜେକ୍‌ଟ କହିଲେ ଅତ୍ୟୁକ୍ତି ହେବନାହିଁ । ଏଇ ବ୍ୟୟସାପେକ୍ଷ ପ୍ରୋଜେକ୍‌ଟ ଗୁଡ଼ିକ କାଳ-କ୍ରମେ ପୁଞ୍ଜିପତିଙ୍କ କରକବଳିତ ହେଉଛନ୍ତି । ସମ୍ବାଦପତ୍ରସଂସ୍ଥା ପରେ ସାହିତ୍ୟ ପତ୍ରିକା ଗୁଡ଼ିକ ପୁଞ୍ଜିପତିମାନଙ୍କର ଦଖଲସତ୍ତ୍ୱ ଭିତରକୁ ଆସିଯାଉଛି । ବମ୍ବେ, ଦିଲ୍ଲୀ, କଲିକତା ପ୍ରଭୃତି ଅଂଚଳରେ ଏହାର ବହୁଳ ଦୃଷ୍ଟାନ୍ତ ମିଳୁଛି । ଓଡ଼ିଶାରେ କୌଣସି ସାହିତ୍ୟ ପତ୍ରିକାର ସମ୍ପାଦକ ପୁଞ୍ଜିପତି ହେବାତ ଦୂରର କଥା— ସଫଳ ବ୍ୟବସାୟୀ ମଧ୍ୟ ନୁହନ୍ତି । ଓଡ଼ିଶାରେ କୌଣସି ସାହିତ୍ୟ ପତ୍ରିକା ସାର୍କୁଲେସନ ଦୃଷ୍ଟିରୁ ଆତ୍ମ-ନିର୍ଭରଶୀଳ ନୁହେଁ । ସମଗ୍ର ଓଡ଼ିଆ ସାହିତ୍ୟରେ ଖଣ୍ଡେଅଧେ ପତ୍ରିକାକୁ ଛାଡ଼ିଦେଲେ ଅନ୍ୟ କେହି ନିର୍ଦ୍ଧାରିତ ବିକ୍ରୀ ସଂଖ୍ୟାର ଯୋଗ୍ୟତା ବଳରେ ରାଜ୍ୟ ସରକାର ବା କେନ୍ଦ୍ର ସରକାରଙ୍କଠାରୁ ବିଜ୍ଞାପନ ହାସଲ କରି ପାରୁଥିବା ଦେଖାଯାଏ ନାହିଁ । ଏଇସବୁ ବାସ୍ତବବାଦୀ ତଥ୍ୟ ଗୁଡ଼ିକ କୌଣସି ଆଲୋଚକ ପକ୍ଷେ ସଂଗ୍ରହ କରିବା ଆଦୌ କଷ୍ଟକର ନୁହେଁ ।

ସମସ୍ତ ଘଟଣା ଓ ତଥ୍ୟ ସଂଗୃହୀତ ହୋଇପାରିଲେ ଓଡ଼ିଶାରେ ସାହିତ୍ୟ ପତ୍ରିକା ଲେଖକମାନଙ୍କୁ ଏକ୍ସପ୍ଲଏଟେସନ କରୁଛି ବୋଲି କହୁଥିବା ଆଲୋଚକଙ୍କ ଦୃଷ୍ଟିକୋଣ ନିଶ୍ଚିତଭାବେ ପ୍ରମାଣିତ ହୋଇଯିବ । ତାହା ନକରି କେବଳ ଅନୁମାନ ଓ ସମ୍ଭାବନାର କଷଟି ଉପରେ କୌଣସି ଅର୍ଥନୈତିକ ପ୍ରଶ୍ନର ସମାଧାନ ଆଦୌ ସମ୍ଭବପର ନୁହେଁ ।

ଓଡ଼ିଆ ସାହିତ୍ୟରେ ଯଦି ଲେଖକ ଏବଂ ସମ୍ପାଦକ ଉଭୟେ ଉଭୟଙ୍କର ସମସ୍ୟା ଏବଂ ଦାବୀ ଗୁଡ଼ିକ ବାସ୍ତବତାର ଭିତ୍ତିଭୂମି ଉପରେ ସମାଧାନ କରିବାକୁ ଅସମର୍ଥ, ତାହାହେଲେ ସେମାନେ ପରିବର୍ତ୍ତନଶୀଳ ଦୁନିଆରେ ପାଠକର ଚାହିଦା ପୂରଣ କରିବାପାଇଁ କେତେଦୂର ସମର୍ଥ ହୋଇପାରିବେ ? ଏଭଳି କାଳ୍ପନିକ 'ଏକ୍ସପ୍ଲଏଟେସନ'ର ଦୁଆରେ ସାହିତ୍ୟ ପତ୍ରିକାର ସମ୍ପାଦକ ଏବଂ ପ୍ରକାଶକଙ୍କ ବିରୁଦ୍ଧରେ ସ୍ଲୋଗାନ ଦେବା ଅପେକ୍ଷା ଲେଖକ ଓ ସମ୍ପାଦକ ଉଭୟେ ମିଳିମିଶି ବସ୍ତୁସ୍ଥିତିର ସମ୍ମୁଖୀନ ହେଲେ ବରଂଚ ଓଡ଼ିଆ ସାହିତ୍ୟ ପତ୍ରିକା ଗୁଡ଼ିକ ଉଭୟଙ୍କ ସ୍ୱାର୍ଥ ଦୃଷ୍ଟିରୁ ବିଶେଷ ଫଳଦାୟକ ହୋଇପାରନ୍ତେ ।





## ॥ ସାହିତ୍ୟକର ସାମାଜିକ ସ୍ୱୀକୃତି ॥

ଏକଦା ପୂର୍ବ ପାକିସ୍ତାନର ଫକୀରମାନେ ଗୋଟାଏ ସିଦ୍ଧାନ୍ତ କରିଥିଲେ ଯେ ସେମାନଙ୍କୁ ପନ୍ଦର ପଇସାରୁ ଊଣା ଭିକ୍ଷା ଦିଆଗଲେ ସେମାନେ ତାହା ଗ୍ରହଣ କରିବେନାହିଁ ଏବଂ ୪୫ ସେକେଣ୍ଡରୁ ଅଧିକ କାଳ କେହି ଭିକାରିକୁ ନିଜ ଦୁଆରେ ଅଟକାଇ ପାରିବେନାହିଁ ।

ପୂର୍ବ ପାକିସ୍ତାନ ଏକ ଧର୍ମଭିତ୍ତିକ ରାଷ୍ଟ୍ର ହୋଇଥିବାରୁ ସେଠାରେ ଧର୍ମ ପ୍ରଚାରକ ଫକୀରମାନଙ୍କ ସିଦ୍ଧାନ୍ତକୁ ଜନସାଧାରଣ ହୁଏତ ସମ୍ମାନ ଦେଇ ପାରନ୍ତି । କିନ୍ତୁ ଭାରତରେ ଭିକାରୀ କାହିଁକି, କବି ସାହିତ୍ୟିକ ମଧ୍ୟ ସେହିଭଳି ଢଂଗରେ ସମାଜଠାରୁ ଉଦାରତା ଦାବୀ କରିବା ଅବସ୍ଥାକୁ ଆସିନାହାନ୍ତି ।

ପାକିସ୍ତାନରେ ଗଣତନ୍ତ୍ର ଅଛିବୋଲି ଭାରତରେ କେହି ବିଶ୍ୱାସ କରନ୍ତୁ ବା ନକରନ୍ତୁ, ଆମ ଦେଶରେ ଆମପାଇଁତ ନିଶ୍ଚୟ ଗଣତନ୍ତ୍ର ରହିଛି । ଗଣତନ୍ତ୍ର କହିଲେ ବହୁ ମତର ଶାସନକୁ ବୁଝାଏ । କିନ୍ତୁ ଏଇ ବହୁ ମତର ଶାସନଟା ବୋଧହୁଏ ଭିକ୍ଷା ଦାତାଙ୍କ ଶାସନ । କାରଣ ଭିକ୍ଷାର୍ଥୀଙ୍କର ଯଦି ବହୁ ମତ

ହୁଅଂତା, ତାହାହେଲେ ଭିକ୍ଷାବୃତ୍ତି ମଧ୍ଯ ସମାଜରୁ ଲୋପ ପାଆଂତା । ମଣିଷଂକର ସୁରକ୍ଷାଲାଗି ସମାଜରୁ ଭିକ୍ଷାବୃତ୍ତି ଉଠିବା ସମୀଚୀନ ନୁହେଁ । କାରଣ ସମାଜରେ ଏକୋଧିକ ଶ୍ରେଣୀ ନଥିଲେ ଗଣତଂତ୍ର ମଧ୍ଯ ତିଷ୍ଠି ପାରିବନାହିଁ । ସେ କ୍ଷେତ୍ରରେ ଶାସନଟା ବହୁ ମତର ଶାସନ ନହୋଇ ଏକ ମତର ଶାସନ ହୋଇଯିବ । ଏକମତ ଶାସନ ବା ଅଟୋକ୍ରେସୀ ଆମର କାମ୍ୟ ନୁହେଁ ।

ଯେଉଁହେତୁ ଭାରତର ରାଜନୈତିକ ଜୀବନରେ ଭିତ୍ତି ଓଡ଼ିଶା ଗଣତଂତ୍ରର ସୁରକ୍ଷାଲାଗି ଉଦ୍ୟମ ହେଉଛି । ନିର୍ବାଚନ ପଦ୍ଧତି ହେଉଛି, ଗଣତଂତ୍ରର ସୁରକ୍ଷା ଦିଗରେ କୌଶଳ । ନିର୍ବାଚନରେ ଯେଉଁମାନେ ଜିତଂତି ସେମାନେ ବହୁ ମତରେ ବିଜୟପ୍ରାପ୍ତ ହୁଅଂତିବୋଲି କୁହାଯାଏ । ସେଉଁମାନେ ବା ଯେଉଁ ମତବାଦର ଲୋକ ବହୁ ସଂଖ୍ୟାରେ ବିଜୟୀ ହୁଅଂତି ଦେଶରେ ତାଂକରି ଦଳର ଶାସନ ଚାଲେ । ଏହି ଶାସନକୁ ମଧ୍ଯ ବହୁ ମତର ଶାସନ କୁହାଯାଏ ।

ସାମାଜିକ ବ୍ୟବସ୍ଥା ଦୃଷ୍ଟିରୁ ଏଇ ବହୁ ମତର ଶାସକମାନେ ହେଲେ ଭିକ୍ଷାଦାତା, ଅନ୍ୟମାନେ ଭିକ୍ଷାର୍ଥୀ । ଭାରତର ଭୌଗଳିକ ମାନଚିତ୍ର ଭିତରେ ଯେତେ ମୁଲକ ଯେଉଁଆଡ଼େ ଅଛଂତି ସବୁଆଡ଼େ ଗଣତଂତ୍ର ଚାଲିଛି । ଓଡ଼ିଶା ମୁଲକ ସେଥିରୁ ବାଦଯିବ କେମିତି ? ଏଠିବି ବହୁ ମତର ଶାସନ ସଂସ୍ଥାକୁ ଯେଉଁମାନେ ଅକ୍ତିଆର କରିଛଂତି, ସେମାନେ ସମସ୍ତେ ଭିକ୍ଷାଦାତା । ସାଧାରଣ ମଣିଷ ତାଂକ ସମ୍ମୁଖରେ ଭିକ୍ଷାର୍ଥୀ । ଭିକ୍ଷାର୍ଥୀମାନେ ଦିଏ ଯେଉଁ ବେଶଧରି ଭିକ୍ଷା ନବାକୁ ଆସଂତି , ଓଡ଼ିଶା ରାଜକୋଷରୁ ପ୍ରତିବର୍ଷ ଶତାଧିକ କୋଟି ଟଂକା ଭିକାରୀମାନଂକୁ ବଂଟାଯାଏ । ସରକାରଂକ ମଂତ୍ରୀ ମଣିମା ଉପର ହାତରେ ଦାନ କରି ପୁଣ୍ୟ ଅର୍ଜନ କରଂତି । ଭିକ୍ଷାର୍ଥୀମାନେ ତଳ ହାତରେ ଦାନ ଗ୍ରହଣକରି କୃତାର୍ଥ ହୁଅଂତି ।

ରାଜକୋଷର ବିପୁଳ ଧନରାଶିରୁ 'ସାହିତ୍ୟ-କାଂଗାଳି' ମାନଂକ ହାତରେ ଗତବର୍ଷ ମାତ୍ର ଏକଲକ୍ଷ ବତିଶ ହଜାର ଟଂକା ପଡ଼ିଥିଲା । ଓଡ଼ିଶାରେ ସାହି- ତ୍ୟିକ ଓ ସାହିତ୍ୟ ଅନୁଷ୍ଠାନର ସଂଖ୍ୟା ଯଦି ଗଣିହୁଅଂତା, ତାହାହେଲେ ଏଠି ସାହିତ୍ୟ ଭିକାରୀମାନେ ପୁର୍ବ ବଂଗର ସଂସାରମାନଂକ ସକଳିକୁ ହୋହରାଇବା ଦ୍ଵାରା କେଉଁ ପରିମାଣରେ ଲାଭବାନ ହେଉଛଂତି, ତାହା ସାଧାରଣ ଲୋକେ କଳନା କରିପାରଂତେ । କିଂତୁ ଦେଶର ସାହିତ୍ୟିକ ଓ ସାହିତ୍ୟ ଅନୁଷ୍ଠାନର ସଂଖ୍ୟା ତ ଜନସୁମାରି ହିସାବ ସନ୍ଧିରୁ ଜଣା ପଡ଼ିବନାହିଁ !

ଦଶବର୍ଷରେ ଥରେ ଜନଗଣନାବେଳେ, ବଢ଼େଇ, କମାର, ନାପିତ ଓ ତନ୍ତ୍ରବାୟଙ୍କ ଭଳି ସାହିତ୍ୟ ପେଷାର ଲୋକଭାବେ ନିଜକୁ ଚିହ୍ନଟ ଦେବା'କୁ ଖୁବ୍ କମ୍ ଲୋକ ବାହାରନ୍ତି । କାରଣ ଦେଶରେ ଆଜିଯାଏ ସାହିତ୍ୟକୁ ଏକ ପେଷାରୂପେ ସ୍ୱୀକୃତ ମିଳିନାହିଁ । କବି, ଗାଳ୍ପିକ ଏବଂ ଔପନ୍ୟାସିକଙ୍କଭଳି କଳ୍ପନାଶ୍ରୟୀ ଜୀବମାନଙ୍କୁ ସୌଖୀନ ସାମନ୍ତବାଦୀ ଯୁଗରେ ପଦ୍ମଭୃଙ୍ଗ ବା କମଳ-ବିଳାସୀ କୁହାଯାଉଥିଲା । କାରଣ ଦେଶର ଅର୍ଥନୈତିକ ବ୍ୟବସ୍ଥାରେ ସେମାନଙ୍କର କୌଣସି ଅସ୍ତିତ୍ୱ ନଥିଲା । ଚଳନ୍ତି ଶତାବ୍ଦୀରେ ମଝାମଝି ପର୍ଯ୍ୟନ୍ତ ଅବସ୍ଥା ଠିକ ସେଇଆ ରହିଥାଏ । ସାମନ୍ତବାଦର ଉତ୍ତରାଧିକାରୀ ସାମ୍ରାଜ୍ୟବାଦୀ ଶାସନତନ୍ତ୍ର ଏଇ ଶ୍ରେଣୀର ଆଶ୍ରିତ ଜୀବଙ୍କୁ ପେଷାଦାରୀ ମଣିଷର ସ୍ୱୀକୃତି ଦେବାପାଇଁ ସମ୍ମତ ହେଲାନାହିଁ । ଭାରତୀୟ ଦଣ୍ଡବିଧି ଆଇନର ଫର୍ଦ୍ଦ ଭିତରେ ପେଷାହୀନ (Bad livelihood) ମଣିଷଜାତିର ଯେଉଁ ଅନଭିବ୍ୟକ୍ତ ତାଲିକା ରହିଥିଲା, ତା' ଭିତରେ କବି, କଳାକାର ମଧ୍ୟ ସାମିଲ ହୋଇଗଲେ !

ତଥାପି ସମୟର ଏକ ବିକଳ୍ପ ପରିଣତି, ଇତିହାସର ଯୁଗ ଯନ୍ତ୍ରଣାକୁ ମଧ୍ୟ ଭ୍ରୂକ୍ଷେପ ନକରି ନିଜ ପଥରେ ଆଗେଇ ଚାଲିଥିଲା । ଭାରତ ଭୂ-ଖଣ୍ଡରେ ଇଉରୋପୀୟ ଶିକ୍ଷାର ପ୍ରସାର ଫଳରେ ସାଂସ୍କୃତିକ ଜୀବନର ନବ ରୂପାୟନ ସମ୍ଭବପର ହେଲା । ଏହାରି ଫଳରେ ବହୁ ଲୁକ୍କାୟିତ ପ୍ରତିଭାର ଉନ୍ମେଷ ଘଟି, କଳା ଓ ସାହିତ୍ୟର ବିକାଶ ସାଧିତ ହେଲା । କିନ୍ତୁ ସାମ୍ରାଜ୍ୟବାଦୀ ସରକାର ସାହିତ୍ୟ ଓ କଳାକୁ ସର୍ବଭୋଗ୍ୟ ନକରି କେତେକ ଉଚ୍ଚ ଆଭିଜାତ୍ୟ ସମ୍ପନ୍ନ ପରିବାରର ବିଳାସବ୍ୟସନରୂପେ ରାଷ୍ଟ୍ରଦତ୍ତ ମର୍ଯ୍ୟାଦା ସହିତ ସଂରକ୍ଷିତ କରିବାକୁ ଚାହୁଁଥିଲେ । ସେଇହେତୁ ସାହିତ୍ୟ ରାଜ୍ୟରେ ସାଧାରଣ ମନୁଷ୍ୟର ପଦଚିହ୍ନ ଥାପନାପାଇଁ କବି କଳାକାରଙ୍କୁ ପ୍ରତି ମୁହୂର୍ତ୍ତରେ ବହ୍ୟୋନଠ ମୂନର ସମ୍ମୁଖୀନ ହେବାପାଇଁ ପଡୁଥିଲା ।

ଆଜି ଅବଶ୍ୟ ସ୍ୱାଧୀନତା ପରେ ସମାଜର ଚିତ୍ର ବଦଳିଯାଇଛି । ଆଜିକାର ସାହିତ୍ୟ ଖାଲି ଗଣ-ଧର୍ମୀ ନୁହେଁ, ସମାଜର ସାଧାରଣ ବ୍ୟକ୍ତିର ପଦଚିହ୍ନକୁ ମଧ୍ୟ ଆଜି ସାହିତ୍ୟ ପୀଠରେ ସମ୍ମାନିତ କରାଯାଇଛି । ରାଷ୍ଟ୍ର ଆଜି କଳା ସାହିତ୍ୟକୁ ଏକ ସମ୍ମାନଜନକ ରାଷ୍ଟ୍ରୀୟ ବିଭୂତି ରୂପେ ଦେଶ ବିଦେଶରେ ପ୍ରତିଷ୍ଠିତ କରୁଛି । କିନ୍ତୁ ଏହାଦ୍ୱାରା ରାଷ୍ଟ୍ର ଯେଉଁ ପରିମାଣରେ ଲାଭବାନ ହେଉଛି, କଳା ସାହିତ୍ୟର ସ୍ରଷ୍ଟାର ସାଧାରଣ ଜୀବନ ସେହି ପରିମାଣରେ ଉପକୃତ ହେଉଛି କି ? ସ୍ରଷ୍ଟାର ସୃଷ୍ଟିକୁ ଉତ୍ସାହିତ କରିବାଲାଗି 'ସାହିତ୍ୟ ଏକାଦେମୀ' ଏବଂ 'ସାଂସ୍କୃତିକ ମନ୍ତ୍ରୀ

ଦପ୍ତର' ଖୋଲାଯାଇଛି । ଏହି ବିଭାଗକୁ ଖୋଲିବା ଦ୍ୱାରା ସରକାରଙ୍କ ଦଳୀୟ ମର୍ଯ୍ୟାଦା ଏବଂ ଆତ୍ମ ଗୌରବର ପ୍ରତିଷ୍ଠାଲାଗି ସୁଯୋଗ ମିଳିଯାଉଛି ସତ, କିନ୍ତୁ ଏଥିରେ ସ୍ରଷ୍ଟାମାନଙ୍କର ସୃଷ୍ଟିର ଗୁଣାତ୍ମକ ବିକାଶଲାଗି କୌଣସି ପ୍ରେରଣା ମିଳୁଛିକି ? ସେମାନଙ୍କର ସାମାଜିକ ଜୀବନରେ ଅଭିବୃଦ୍ଧି ଅଥବା ଦେଶର ସାମୂହିକ ସୃଜନ ପ୍ରତିଭାର ପରିମାଣାତ୍ମକ ଏବଂ ଗୁଣାତ୍ମକ ବିକାଶଲାଗି ଏଇସବୁ ଅନୁଷ୍ଠାନର କି ଅବଦାନ ରହିଛି ?

ପ୍ରସଙ୍ଗକ୍ରମେ ବକ୍ତବ୍ୟଟି ଅବଶ୍ୟ ଏଠାରେ ପରିଷ୍କାରଭାବେ ସ୍ୱୀକାର କରିଦେବାକୁ ପଡ଼ୁଛି ଯେ, ସାହିତ୍ୟ ଓ କଳା କ୍ଷେତ୍ରରେ ସୃଜନ ପ୍ରତିଭାକୁ ଉତ୍ସାହିତ କରିବା ଠିକ୍ କାଶ୍ମୀରର ପଶମ ଶିଳ୍ପ, ହାଇଦ୍ରାବାଦର ହସ୍ତଶିଳ୍ପ, ବନାରସର ଓ ମସଲିପଟ୍ଟମର ସୀବନଶିଳ୍ପର କାରିଗରମାନଙ୍କୁ ଉତ୍ସାହିତ କଲାଭଳି ଘଟଣା ନୁହେଁ । ମସଲିପଟ୍ଟମ ଓ ତାଂଜୋରର କାରିଗର ପୁରୁଷାନୁକ୍ରମିକ ଭାବେ ନିଜ ପେଷା ଭିତରେ ରହି ଆଜି ତାଂକର କୌଳିକ ହାତଯଶର ପରିଚୟ ଦିଅନ୍ତି । ସେମାନଙ୍କର ପ୍ରସ୍ତୁତ ଦ୍ରବ୍ୟ ଭାରତର ମୋଗଲ ବାଦଶାହାଂକଠାରୁ ସାହେବୀ ଦରବାର ପର୍ଯ୍ୟନ୍ତ ସବୁ କାଳରେ ରାଜା ବାଦଶାହାଂକ ଦ୍ୱାରା ଆଦୃତ ହୋଇଥିଲା । ବିଦେଶରେ ଆଜି ସେଇସବୁ ଶିଳ୍ପର ଖ୍ୟାତି ହେତୁ ତାହା ପର୍ଯ୍ୟଟକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସେଇସବୁ କାରିଗରମାନଙ୍କର ହସ୍ତ ଶିଳ୍ପର ନିପୁଣତା ପ୍ରତି ସରକାରୀ ପୃଷ୍ଠପୋଷକତା; ବସ୍ତୁଗୁଡ଼ିକର ଗୁଣାତ୍ମକ ଓ ପରିମାଣାତ୍ମକ ଅଭିବୃଦ୍ଧିରେ ଯେପରି ସହାୟତା କରୁଛି, ସାହିତ୍ୟ କ୍ଷେତ୍ରରେ ଠିକ୍ ସେଇଆ ହୋଇ ପାରେନା । କାରଣ ସାହିତ୍ୟ ସୃଷ୍ଟିର କୌଶଳ କୌଳିକ ଧର୍ମନୁହେଁ । ଏହା କୌଣସି ପୁରୁଷାନୁକ୍ରମିକ ଶିଳ୍ପ ନୁହେଁ ।

କେରଳରେ କୈବର୍ତ୍ତମାନଙ୍କୁ ଉତ୍ସାହିତ କରିବାଲାଗି ଉନ୍ନତଧରଣର ମାଛଧରା ଡଂଗା ଯୋଗାଇ ଦିଆଯାଇ ପାରେ । ସାଧାରଣ କୃଷୀକୁ ଖତସାର ପ୍ରୟୋଗର ମହତ୍ତ୍ୱ ବୁଝାଇଲେ ସେ ନିଜ ଭୂମିରେ ବହୁଗୁଣିତ ଫସଲ ଆମଦାନୀକୁ ତ୍ୱରାନ୍ୱିତ କରି ପାରିବ । କୃଷୀ ଓ କୈବର୍ତ୍ତ ଉଭୟଙ୍କଲାଗି ନୂଆ ସାଧନ ଏବଂ Know-how (କାରିଗରୀ କୌଶଳର ଜ୍ଞାନ)ର ଅଭାବ ରହିଥିଲା । ତାହା ଦୂରହେବାପରେ ଉତ୍ପାଦନ ବଢିଗଲା ।

କିନ୍ତୁ ସାହିତ୍ୟକଲାଗି ସାଧନ ଏବଂ know-how କଣ ଠିକ୍ ସେମିତି ଯାଂତ୍ରିକ ପ୍ରକ୍ରିୟାରେ ଆମଦାନି କରିପାରିବା ? ସାହିତ୍ୟର ସୃଷ୍ଟି ଏକ ମାନସିକ କ୍ରିୟା । ଅନୁଭୂତି ଗୁଡ଼ପରେ ମାନସିକ କ୍ରିୟାର ପ୍ରତିଫଳନ ଏବଂ ତାର ବିକାଶ ହିଁ

ସାହିତ୍ୟ । ଏଥିପାଇଁ ସଂବେଦନଶୀଳ ବାତାବରଣ ଏବଂ ବସ୍ତୁଗନ୍ଧି ଗ୍ରାହକତା ଦରକାର । ରସଗ୍ରାହୀ ପୃଷ୍ଠପୋଷକ ବିନା ସାହିତ୍ୟର ଅଭିବୃଦ୍ଧି ଅସମ୍ଭବ । ବର୍ଷକେ ଥରେ ଖାଲି ପୁରସ୍କାର ଯାଚିଲେ ସାହିତ୍ୟ ହୋଇଯାଏ ନାହିଁ । ସାହିତ୍ୟର ଲାଳନପାଳନ ଲାଗି ଗର୍ଭଧାରିଣୀ ମାତା ଦରକାର ।

କିନ୍ତୁ ଦୁଃଖର କଥା, ଆଜି ଭାରତରେ ରାଜନୈତିକ "ଲୁପ୍" ପିନ୍ଧିଥିବା ଗର୍ଭଧାରିଣୀ ଜନନୀର ମଧ୍ୟ ସନ୍ତାନ ଲାଳନପାଳନ ପ୍ରତି ଆନ୍ତରିକତାର ଅଭାବ ଘଟି 'ସାହିତ୍ୟ ଏକାଡେମୀ' ଏବଂ 'ସାଂସ୍କୃତିକ ବ୍ୟାପାର ବିଭାଗ' ରାଜନୈତିକ ଗୋଷ୍ଠୀ ତୋଷଣର କ୍ରୀଡ଼ା କେନ୍ଦ୍ର ପାଲଟି ଯାଇଛି । ସେଇପରି ଅନୁଷ୍ଠାନ ମାନଙ୍କ ପାଖରେ ସାହିତ୍ୟିକମାନେ ମହତ ସରାଇ ଭିକାରୀ ବେଶରେ ଗୋଡ଼ ଭାଙ୍ଗି ଠିଆହେଲେବି, ସେମାନଙ୍କ ପେଟର କୋଣଟିଏ ପୂରିବାକୁ ନାହିଁ । ଭିକ୍ଷାଦାତା ମନ୍ତ୍ରୀ ମଣିମାଙ୍କଠାରେ ସୃଜନଶୀଳ ପ୍ରତିଭା ଏବଂ ସୃଜନଶୀଳ ଅନୁଷ୍ଠାନକୁ ଆଦର କରିବାର କୌଣସି ଗ୍ରାହକତ୍ୱ ଦୃଷ୍ଟିଗୋଚର ହେଉନାହିଁ । ସେମାନେ ନିଜର ଦିଗ୍ରପାଂଠି ଦ୍ୱାରା ଦଳ ପୋଷଣରେ ବ୍ୟସ୍ତ । ରାଜନୈତିକ "ଲୁପ୍" ପ୍ରୟୋଗ ଦ୍ୱାରା ସେମାନଙ୍କର ସାମାଜିକ ଚେତନାରେ ବନ୍ଧ୍ୟାତ୍ୱ ସୃଷ୍ଟି ହୋଇଛି । କ୍ଷମତା କେନ୍ଦ୍ରିକ ଜୀବନର ପ୍ରମତ୍ତ ଭୋଗବିଳାସ ମଧ୍ୟରେ ଆକଣ୍ଠ ନିମଜ୍ଜିତ ମନ୍ତ୍ରୀ ମଣିମାଙ୍କ ଦୁଆରେ ଭାରତୀୟ ସାହିତ୍ୟିକ ଆଜି କଣ ପାକିସ୍ଥାନର ଫଙ୍କାରଙ୍କଭଳି ସମୟୋଚିତ ବ୍ୟବହାର, ସୌଜନ୍ୟ ଏବଂ ସାମାଜିକ ସ୍ୱୀକୃତି ଦାବୀ କରିପାରିବ ???





## ।। ସାହିତ୍ୟ ଏକାଦେମୀ ।।

ସାହିତ୍ୟକୁ ମଣିଷ ପଦବାଚ୍ୟ କରି ସେଥିରେ ମନୁଷ୍ୟକୃତ ଦୋଷ ଦୁର୍ବଳତା ଭରିବାଲାଗି ବୋଧହୁଏ ସାହିତ୍ୟ ଏକାଦେମୀ (ସାହିତ୍ୟ ଏକ ଆଦମୀ ?) ଗଢ଼ାଯାଇଛି ।

ବଂଗଳା ଭାଷାରେ "ସୁନାର ପଥୁରିବାଟି" ବୋଲି ଗୋଟିଏ ପ୍ରବଚନ ରହିଛି । ପଥୁରିବାଟି କେବେ ସୁନା ହୋଇ ପାରେନା । ହିଂଦୀ, ଇଂରେଜୀ ଭାଷା ମିଶ୍ରିତ ଏଇ ଜାରଜ ନାମକରଣ —'ଏକାଦେମୀ'—ଶବ୍ଦର ଅର୍ଥ ମଧ୍ୟ ସେଇଆ ।

ଅର୍ଥାତ୍, ଶୃଙ୍ଖଳ ଏବଂ ଶକ୍ତ, କରାସିନ୍ଧପର ସ୍ୱାଧୀନୋତ୍ତର ଯୁଗର ସୃଜନଶୀଳ ପ୍ରତିଭାକୁ ଯେତେବେଳେ ସରକାରୀ ଲଗାମ ଦ୍ୱାରା ଆୟତ୍ତ କରିବାର ଫଂନ୍ଦି କୌଶଳ ଶାସକ ଦଳର ମଗଜରେ ଢୁକିଲା, ସେତେବେଳେ ଏଇ ଅଦଭୂତ ସରକାରୀ ସଂସ୍ଥାଟି ଗଢ଼ାଗଲା ।

ସଂସାର ଭିତରେ ମଣିଷ ଓ ପଶୁ ମଧ୍ୟରେ ସୀମାରେଖା ଯେ ଖୁବ୍ ବିସ୍ତୃତ ଏଇ କଥାକୁ ଶାସ୍ତ୍ରକାରମାନେ ପ୍ରମାଣିତ କଲାବେଳେ ଅପ୍ରମାଣିତ କଲାଭଳି ଆଉ ଯେଉଁ କଥା ବୋଧହୁଏ ଭୁଲକ୍ରମେ ସେମାନଙ୍କ କଲମ ଅଗରୁ ତଳକୁ ଖସିପଡ଼ିଛି । କଥାଟି ହେଲା— 'Animality plus rationality is humanity' ? ଆନିମଲିଟି ବା ପଶୁତ୍ୱ ଦେହରେ ରାସନାଲିଟି ବା ବିବେକବୁଦ୍ଧିର ଉଦୟ ଘଟିଲେ ଜୀବ ମନୁଷ୍ୟ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥାଏ । କିନ୍ତୁ ଏହାର ଅର୍ଥ କଦାପି ନୁହେଁଯେ, ମନୁଷ୍ୟତ୍ୱ ଚିଟିକୁ ଉଠିଲାମାତ୍ରେ ଜୀବ ଦେହରୁ ପଶୁତ୍ୱର ସମସ୍ତ କୁଲକ୍ଷଣ ତଳକୁ ଖସି ପଡୁଛି । ପଶୁମାନେଯେ ବିଚାରଶକ୍ତି ବିବର୍ଜିତ ଏହା ମଧ୍ୟ ଗ୍ରହଣ କରାଯାଇ ପାରେନା । କାରଣ ପଶୁଙ୍କ ଭିତରେ ବି ଅନେକ ପ୍ରାଣ ରକ୍ଷାକାଙ୍କ୍ଷୀ ଜୀବ ଅଛନ୍ତି । ପଶୁ କେବଳ ଅବିବେକିତାପୂର୍ଣ୍ଣ ହୋଇଥିଲେ ତାକୁ ଗୃହପାଳିତ ସେବକ କରିବାର ପ୍ରଶ୍ନ ଉଠି ନଥାନ୍ତା ।

ସେଇହେତୁ ମନୁଷ୍ୟ ଓ ପଶୁର ପାର୍ଥକ୍ୟ ସଂପର୍କରେ ପୁରୁଣା ଶାସ୍ତ୍ରବାଣୀର ଆଜି ଏକ ଆଧୁନିକ ବ୍ୟାଖ୍ୟା ବି ପ୍ରୟୋଜନ । ସେଇଟା ହେଲା— ବିବେକ ଶୂନ୍ୟତା ଲାଗି ଲାଇସେନ୍ସ ବା ଅଧିକାର ପ୍ରାପ୍ତ ପ୍ରାଣୀମାନେହିଁ ମନୁଷ୍ୟ । ସେତକ ହେଉଛି ଏକା ମଣିଷ ଜାତିର 'ପ୍ରିଭିଲେଜ୍' । ସେଇ 'ପ୍ରିଭିଲେଜ'ରୁ ବଂଚିତ ପ୍ରାଣୀଙ୍କୁ ପଶୁ କୁହାଯାଉଛି । ବିଚାର ଶୂନ୍ୟତାର ଆର୍ଷ ପ୍ରୟୋଗଲାଗି ମନୁଷ୍ୟଭଳି ପଶୁକୁ କେବେ କୌଣସି ସ୍ୱାଧୀନତା ଦିଆଯାଇ ପାରେନା ।

ଏହି ତର୍ଜମାକୁ ମନେରଖିଲେ ସାହିତ୍ୟ ଏକାଡେମୀର ସ୍ୱରୂପ ନିରୂପଣ କରିବା ସହଜସାଧ୍ୟ ହୋଇପାରିବ । ସେହି ଦୃଷ୍ଟିରୁ ସାହିତ୍ୟ ଏକାଡେମୀକୁ ମଧ୍ୟ ଏକ ଦୋଷତ୍ରୁଟି ସବଳିତ ମନୁଷ୍ୟ (ଆଦମୀ?) ବା ମନୁଷ୍ୟ ଚାଳିତ ସଂସ୍ଥା ରୂପେ ଗ୍ରହଣ କରାଯାଇ ପାରେ । ଭାରତବର୍ଷରେ ସାହିତ୍ୟ ଏକାଡେମୀର ପରିଚୟ ଏହାଛଡ଼ା ଆଉ କଣ ହୋଇପାରେ ?

ସାହିତ୍ୟ ଏକାଡେମୀ ନାମରେ କେନ୍ଦ୍ରୀୟ ସ୍ତରରେ ପରିଚାଳିତ ସଂସ୍ଥାଟିର କାର୍ଯ୍ୟକଳାପ ଦେଶ ଭିତରେ ସୃଜନାତ୍ମକ ପ୍ରତିଭାର ବିକାଶଲାଗି କେତେଦୂର ସହାୟକ ତାହା ବିଚାର କରିବାର ଅଧିକାର ସାହିତ୍ୟିକ ବା ସାହିତ୍ୟ ଅନୁଷ୍ଠାନର ନିଶ୍ଚିତଭାବେ ରହିଛି । ବିଶ୍ୱ ସୁନ୍ଦରୀ ପ୍ରତିଯୋଗିତାପରି ମୁଷ୍ଟିମେୟ କବି ଓ ଲେଖକଙ୍କ ମୁଣ୍ଡରେ ଶ୍ରେଷ୍ଠତ୍ୱର ଶିରପା ବାନ୍ଧିଦେଲେ ସାହିତ୍ୟର କୌଣସି ଗୁଣାତ୍ମକ ବା ପରିମାଣାତ୍ମକ ବିଶେଷତ୍ୱ ଆସେନାହିଁ । ଏ ଦେଶରେ କଳା ସାହିତ୍ୟ

କାରିଗର, କୃଷିଶିଳ୍ପ କ୍ଷେତ୍ରରେ ମଧ୍ୟ ପ୍ରଦର୍ଶନୀ ଆୟୋଜନ ଦ୍ୱାରା ଶ୍ରେଷ୍ଠ ଉତ୍ପାଦକଙ୍କୁ ପୁରସ୍କାର ଦିଆଯାଇଥାଏ ।

ଉପଢୌକନ ଏବଂ ଉପାୟନ ବ୍ୟବସ୍ଥାକୁ ସାମନ୍ତବାଦୀ ଯୁଗର ପ୍ରତିରୋଧ କୌଶଳ କହିଲେ ଅଯୁକ୍ତ ହେବନାହିଁ । ଦେଶର କୌଣସି ଜନମଙ୍ଗଳ କାର୍ଯ୍ୟ ଉଦ୍ଦେଶ୍ୟରେ ଉପାୟନପ୍ରାପ୍ତି ସାଧକ ନହୋଇ ବରଂଚ ବାଧକ ହୋଇଥାଏ । ସାମନ୍ତବାଦୀ ଯୁଗର ସେଇ ଅପଲକ୍ଷଣ ଗୁଡ଼ିକୁ ଆଜିକାର ଉନ୍ମେଷିତ ଜୀବନ ପ୍ରତିଭାର ନାସ୍ତିମକ ମନେକରିବା ଉଚିତ ହେବନାହିଁ ।

ମାଳାକାର ଯେଉଁ ଫୁଲରେ ମାଳ ତିଆରି କରେ, ତାହାହିଁ ବଗିଚାର ଶ୍ରେଷ୍ଠ ଫୁଲ ବା ଶେଷ ଫୁଲ ନୁହେଁ । ଅନାବନା ଅଯତ୍ନ ବର୍ଦ୍ଧିତ ଉଦ୍ୟାନ ମଧ୍ୟରୁ ଶ୍ରେଷ୍ଠ ଫୁଲଟିଏ ବାଛି ପଦକ ସଜାଇବାରେ କିଛି ଅର୍ଥ ଥାଇପାରେନା । ମାଳାକାର ନିଜେ ଉଦ୍ୟାନର ସ୍ରଷ୍ଟା ଏବଂ ପ୍ରେମିକ । ମାଳାଲାଗି ଉନ୍ମୋଚିତ ଫୁଲ ବିପଣୀର ଶ୍ରେଷ୍ଠ ସମ୍ଭାର ହେଲେ ମଧ୍ୟ ତାହା ଉଦ୍ୟାନର ନଗଣ୍ୟ ଅଂଶ । ତା' ନହୋଇ ପାରିଲେ ଦର୍ଶକ ଏବଂ ରସିକ ଫୁଲ ଦେଖିବା ପାଇଁ ଉଦ୍ୟାନ କଥା ଭୁଲି ବିପଣୀକୁ ଧାଇଁବେ । ଫୁଲର ପ୍ରତିଷ୍ଠା ପାଇଁ ବଜାର ହାଟକୁ ସ୍ୱୀକୃତି ଦିଆଗଲେ ତେଣିକି ପ୍ରାକୃତିକ ଫୁଲ ବଦଳରେ କାଗଜ ଫୁଲର ମଧ୍ୟ ପ୍ରାଧାନ୍ୟ ବଢିଯିବ ।

ସାହିତ୍ୟ ଏକାଡେମୀର ବିହିତ କାର୍ଯ୍ୟକ୍ରମ ହେଉଚି ବିଭିନ୍ନ ଭାଷା ସାହିତ୍ୟ ମଧ୍ୟରେ ଅନ୍ତର୍ମୁଖୀ ପରିଚୟ ସ୍ଥାପନ । ଅନୁବାଦ ଅନୁପ୍ରଚାର ଦ୍ୱାରା ଏହି କାର୍ଯ୍ୟ ଆଂଶିକ ରୂପେ ସଫଳ ହୋଇପାରେ । ଆଜି ପର୍ଯ୍ୟନ୍ତ ଏହି କାର୍ଯ୍ୟକ୍ରମ କେବଳ ଅନୁଗ୍ରହ ବିତରଣ ମଧ୍ୟରେ ସୀମାବଦ୍ଧ । ଏ ଦିଗରେ ବ୍ୟାପକ ବାସ୍ତବ ଏବଂ ସଂଗଠ ସମ୍ପନ୍ନ ଯୋଜନା ଯେତିକି ପ୍ରସାରିତ ହେବ, ସେତିକି ମଧ୍ୟ ଅନୁଗ୍ରହ ବିତରଣର ସୀମା ସଙ୍କୁଚିତ ହୋଇପଡ଼ିବ । ସାହିତ୍ୟ ହିସାବରେ ଭାରତର ପ୍ରତ୍ୟେକ ଭାଷା ଆଜି ଅନ୍ୟପାଖରେ ବିଦେଶୀ । ଅନୁବାଦ, ଅନୁପ୍ରଚାର, ସମନ୍ୱୟ, ଆହରଣ, ବିନିମୟ, ଆଲୋଚନା ଆଦି କାର୍ଯ୍ୟକ୍ରମ ଦ୍ୱାରା ଏ ଦେଶରେ ସାଂସ୍କୃତିକ ନବଜାଗରଣ ଏବଂ ଜାତୀୟ ସଂହତି ସୃଷ୍ଟି କରାଯାଇ ପାରେ ।

ଭାରତଭଳି ଏକ ବିଶାଳାୟତନ ଦେଶରେ ସାହିତ୍ୟିକ କୂପମଣ୍ଡୁକ ହେବା ପାଇଁ ବାଧ । କଳ୍ପନା ଚକ୍ଷୁରେ ଆଲପ୍ସ ପର୍ବତମାଳା ଏବଂ ଇଫେଲ ଟାୱାର

ସମ୍ପର୍କରେ କବିତା ଲେଖୁଥିବା କବି ଜୀବନକାଳ ମଧ୍ୟରେ ହିମାଳୟ ବି ଦେଖି ପାରେନା । ଏ ଦେଶରେ ଉତ୍ତରର କବି ଦକ୍ଷିଣଗାମୀ ଏବଂ ପଶ୍ଚିମର କବି ପୂର୍ବଗାମୀ ନହେବା ପାଇଁ ଅଗସ୍ତି ମୁନି ଯୁଗର ଅଭିଶାପକୁ ବଳବତ୍ତର ରଖା ଯାଇଛି । ସେଇହେତୁ ଭାରତୀୟ ସାଂସ୍କୃତିକ ଜୀବନ ଆଜି ଖଂଡ଼ିତ, ଜାତୀୟ ସହିତ ବିକଳାଂଗ ଏବଂ ବିପର୍ଯ୍ୟସ୍ତ । ଏଠାରେ ସାହିତ୍ୟିକର ଚରମ ଅପରାଧ ହେଉଛି, ଅନୁଭୂତି ସଙ୍କୀର୍ଣ୍ଣତା । ପ୍ରାଚୀନ ଯୁଗର ଗୁଂଫା ଚିତ୍ରଠାରୁ ଭାରତୀୟ କବି ସାହିତ୍ୟିକ ଆଜି କେତେଦୂର ଆଗେଇ ଆସି ବିଜୁଳି ଆଲୁଅରେ ବସି କବିତା ଲେଖୁଛି ସତ, କିଂତୁ ସେଇ ଆଲୋକବିହୀନ ଗୁଂଫା ଚିତ୍ର ଏବଂ ବିଜୁଳି ଆଲୁଅ ତଳେ ଲେଖା କବିତାର ପାର୍ଥକ୍ୟ କେଉଁଠି ? ଏତେବର୍ଷ, ଏତେ ଯୁଗର ବ୍ୟବଧାନରେ ଅଭିଜ୍ଞତାର ଏଇ ଦରିଦ୍ର ପୁଂଜି କେଉଁ ଉପାୟରେ ଆଧୁନିକତାର ବିଷମ କ୍ଷୁଧାକୁ ପ୍ରଶମିତ କରିପାରିବ ?

ସାହିତ୍ୟ ଆଦମୀ ନହୋଇ ଯଦି ଗୋଟିଏ ରାକ୍ଷସ ବା ସୈତାନ ହୁଅଂତା ତାହାହେଲେ ବରଂଚ ଗୁଂଫାଚିତ୍ର ଯୁଗରୁ ବିଜୁଳି ଯୁଗ ଏବଂ ହିମାଳୟରୁ କୁମାରିକାଯାଏ ସମସ୍ତ ପାଣିପାଗର ଅନୁଭୂତି ଏବଂ ବିଶାଳ ଜନଜୀବନର କାହାଣୀ ତାର ଉଦ୍ଦାମ କବି କଂଠରେ ନିନାଦିତ ହୁଅଂତା ?

କିଂତୁ ହାୟ୍ ସାହିତ୍ୟ ଯେ ଗୁରି ମଣିଷ ମାତ୍ର ! ଏବଂ ଏଇ ବିଶାଳବାହୁ ପ୍ରସାରିତ ବିଶ୍ୱବ୍ୟାପୀ ସବଳ ସର୍ବହରାଙ୍କ ଯୋଜନା ଯୁଗର ସବୁଠାରୁ ଶ୍ରେଷ୍ଠ, କୁଜା ଏବଂ ଅଧିକାର ସାବ୍ୟସ୍ତ କରିପାରୁ ନଥିବା ଅଥବା ଉପେକ୍ଷିତ ମଣିଷ !!





## ।। ଭାଷାର ସାମନ୍ତବାଦ ।।

ଭାରତରେ ଇଂରେଜୀ ଭାଷାକୁ ଗୋଲାମୀର ଶିରସ୍ତ୍ରାଣ କୁହାଯାଏ । ମୁସଲମାନ ଓ ମୋଗଲ ରାଜୁତିରେ ଉର୍ଦ୍ଦୁ ଓ ପାର୍ସି ଭାଷା ଏବଂ ଇଂରେଜଙ୍କ ଅମଲରେ ଇଂରେଜୀ ଭାଷା ଭାରତୀୟ ଜନସାଧାରଣଙ୍କ ଦୃଷ୍ଟିରେ ଗୋଲାମୀର ରକ୍ଷା କବଚ ରୂପେ ନିନ୍ଦିତ ହେଉଥିଲେ ।

ଭାଷା ସହିତ ଯେ ଜନସାଧାରଣଙ୍କ ଅର୍ଥନୈତିକ, ସାମାଜିକ ଏବଂ ଆତ୍ମିକ ବିକାଶର ସମ୍ପର୍କ ଅଛି, ମୁସଲମାନ, ମୋଗଲ ବା ଇଂରେଜ ଶାସନରେ ତାହା କଦାପି ସ୍ୱୀକୃତ ହେବାର ସମ୍ଭାବନା ନଥିଲା । ସମାଜର ମୁଷ୍ଟିମେୟ ସ୍ୱଚ୍ଛଳ ଏବଂ ସୁବିଧାଭୋଗୀ ମଣିଷ ରାଜଭାଷାର ସାଂଜୁରେ ସଜ୍ଜିତ ହୋଇ କ୍ଷମତାର ଘୋଡ଼ା ପିଠିରେ ଅବରୋହଣକରି ସାଧାରଣ ଜନତା ଉପରେ କୋରଡ଼ା ଚଲାଇବା ପାଇଁ ସମର୍ଥ ହେଉଥିଲେ । ଗାଁ ଡାକଘର ଓ ପୁଲିସ ଥାନାରୁ ଆରମ୍ଭକରି କଚେରୀ ଅଦାଲତ ଓ ଖଜଣାଖାନା ପର୍ଯ୍ୟନ୍ତ ସବୁଆଡ଼େ ସାଧାରଣ ଜନତାର ମୁହଁରେ ତୁଣ୍ଡିବାନ୍ଧି ଇଂରେଜ ପଢୁଆ ଲୋକ ରାଜୁତି କରୁଥିଲେ ।

ଇଂରେଜଙ୍କ ଅମଳରେ ଇଂରେଜୀ ଭାଷାର ପ୍ରାଧାନ୍ୟ ଭାରତୀୟ ଅର୍ଥନୈତିକ ଜୀବନକୁ ବିପର୍ଯ୍ୟସ୍ତ କରିପକାଉ ଥିଲେ ବି ସେହି ଶୋଷଣରୁ ସେ ଯୁଗରେ ନିଷ୍କୃତି ପାଇବାର ଉପାୟାଂତର ନଥିଲା । ସେଇହେତୁ ପ୍ରତ୍ୟେକ ଉନ୍ନତିକାମୀ ମନୀଷି ରାଜଭାଷାର ଶରଣାପନ୍ନ ହେଉଥିଲେ । ଗାଁ ମହାଜନ କବଳରୁ ଉଦ୍ଧାର ପାଇବାଲାଗି ଯେପରି ଚାଷୀ ଥରେ ସେହି ମହାଜନର ଶରଣାପନ୍ନ ହେବାକୁପଡ଼େ, ଠିକ ସେଇପରି ଇଂରେଜ ଶୋଷଣରୁ ତ୍ରାହି ପାଇବାଲାଗି ଇଂରେଜୀ ଭାଷାର ସହାୟତା ଛଡ଼ା ଗତ୍ୟଂତର ନଥିଲା । ଖାଲି ସେତିକି ନୁହେଁ, ଇଂରେଜମାନଂକୁ ଭାରତରୁ ବିତାଡ଼ିତ କରିବାଲାଗି ଦେଶବ୍ୟାପୀ ଯେଉଁ ଆଂଦୋଳନ ଚାଲିଥିଲା, ସେହି ଆଂଦୋଳନକୁ ମଧ୍ୟ ଇଂରେଜୀ ରାଜଭାଷା ସହାୟକ ହେଉଥିଲା ।

ଇଂରେଜୀ ଭାଷା ସାହିତ୍ୟର ପ୍ରସାରହିଁ ଏ ଦେଶରେ ସ୍ୱାଧୀନତା ଆଂଦୋଳନର ବୀଜ ବପନ କରିଛି ବୋଲି ଅନେକ ଚିଂତାଶୀଳ ମନୀଷୀ ମତବ୍ୟକ୍ତ କରଂତି । ତେଣୁ ଇଂରେଜୀ ଭାଷା ନଥିଲେ ସ୍ୱାଧୀନତା ଆଂଦୋଳନର ବାର୍ତ୍ତା ଭାରତର ଏକ କୋଣରୁ ଅନ୍ୟ କୋଣକୁ ବିସ୍ତୃତ ହୋଇପାରି ନଥାଂତା । ମୁଖ୍ୟତଃ ଦେଖିବାକୁ ଗଲେ ଭାରତରେ ଇଂରେଜୀ ଶାସନକୁ ବିତାଡ଼ିତ କରିବା ଲାଗି ବୁଦ୍ଧିଜୀବୀ ଲୋକମାନଂକ ଦ୍ୱାରା ଯେଉଁ ଉଦ୍ୟମ ଏ ଦେଶରେ ଆରଂଭହେଲା, ତାହା ଗଣ ଆଂଦୋଳନ ରୂପେ ଗ୍ରହଣ କରିବା ପୂର୍ବରୁ ପ୍ରଥମେ କାଗଜପତ୍ରରେ ଲେଖାପଢ଼ା ମାଧ୍ୟମରେ ଆରଂଭ ହୋଇଥିଲା । ସେହି ଆଂଦୋଳନ ଜରିଆରେ ଇଂରେଜୀ ଜାତିକୁ ବିତାଡ଼ିତ କରିବାଲାଗି ଯେତିକି ଉଦ୍ୟମ ହୋଇଛି, ଇଂରେଜୀ ଭାଷାକୁ ସ୍ଥାନଚ୍ୟୁତ କରିବାଲାଗି ସେତିକି ଉଦ୍ୟମ ହୋଇଥିଲେ; ସ୍ୱାଧୀନ ଭାରତରେ ଦୁଇଦଶକଧରି ଜନ୍ମ ହେଉଥିବା ଶିଶୁକୁ ବାପ ମା' ଭାଷା ଶିକ୍ଷା ଦେଲାବେଳେ ସଂଶୟରେ ପଡ଼ୁ ନଥାଂତେ ।

ସ୍ୱାଧୀନତା ଆଂଦୋଳନବେଳେ ସ୍ଥିରୀକୃତ ଭାଷାନୀତି ଗୃହୀତ ନହେବାର ଆଭ୍ୟଂତରୀଣ କାରଣ ଗୁଡ଼ିକ ତନଖି ଦେଖିଲେ, ସେଥିରେ ଅର୍ଥନୈତିକ ସ୍ୱାର୍ଥ ଏବଂ ରାଜନୈତିକ ପ୍ରାଧାନ୍ୟର ସଂଘର୍ଷଛଡ଼ା ଅନ୍ୟ କିଛି ପରିଦୃଷ୍ଟ ହୁଏନାହିଁ । ଅବଶ୍ୟ ଗୋଟିଏ ଦିଗରେ ପୃଥିବୀବ୍ୟାପୀ ବୈଜ୍ଞାନିକ ପ୍ରଗତିର ଆକର୍ଷଣ ଇଂରେଜୀ ଭାଷାକୁ ଭାରତଭଳି ଅନୁନ୍ନତ ମୁଲକରେ ଚେରମାଡ଼ି ରହିବାରେ ସାହାଯ୍ୟ କରିଛି । ଅନ୍ୟ ଦିଗରୁ ଦେଖିଲେ ଏ ଦେଶରେ ଭାଷା ଏବଂ ଧର୍ମଗତ ବିବିଧତା, ଜାତୀୟ ସଂହତିର ଅଭାବ ଏବଂ ଆଂଚଳିକ ମତାଂଧତା ଦେଶ

ମାଟିରେ କୌଣସି ଗୋଟିଏ ଭାଷାକୁ ସର୍ବଜନଗ୍ରାହ୍ୟ ମାଧ୍ୟମ ରୂପେ ପ୍ରତିଷ୍ଠିତ ହେବାରେ ବାଧା ପ୍ରଦାନ କରୁଛି ।

ଇଂରେଜୀ ଦାସତ୍ୱରୁ ଉଦ୍ଧାର ପାଇବାର ଦୁଇଦଶକ ଉତ୍ତାରୁ ପୁରୁଣା ରାଜଭାଷାର ଗୋଲାମୀ ଜଂଜିରକୁ ଗଳାଦେଶରୁ ଓଟାରି ଫିଂଗି ପୃଥକ କରିଦେବା ପାଇଁ ଭାରତୀୟ ମହାଜାତିର ପ୍ରାଣରେ ଯେଉଁ ସ୍ୱାଭିମାନ ଜାଗ୍ରତ ହୋଇଛି, ତାହା ଯଦି ଅଂତର୍ନିହିତ ଶକ୍ତିମତ୍ତାର ପରିଚାୟକ ହଅଂତା, ତାହାହେଲେ କିଛି କହିବାର ନଥିଲା । କିଂତୁ ତତ୍ପରିବର୍ତ୍ତେ ଯେଥିରୁ ଯେଉଁ ଉନ୍ମାଦଗ୍ରସ୍ତ ଭାବପ୍ରବଣତାର ପରିଚୟ ମିଳୁଛି, ତାକୁ ଦେଖିଲେ ମନେହୁଏ, ଏହି ଭାଷା ବିକାର କ୍ରମେ ଚିଂତା ବିକାରରେ ପରିଣତ ହୋଇ ସମଗ୍ର ଜାତିକୁ ରସାତଳଗାମୀ କରିବ । ଜ୍ୱରର ପ୍ରକୋପରେ ରୋଗୀ କଂବଳ ଫିଂଗି ଦେଲାବେଳେ ତାହାକୁ ରୋଗମୁକ୍ତିର ଲକ୍ଷଣ କଦାପି କୁହାଯାଇ ପାରେନା ! ଶହ ଶହ ବର୍ଷଧରି ଭାରତୀୟ ଜାତୀୟ ଜୀବନକୁ ନିୟଂତ୍ରିତ କରି ରଖିଥିବା ଇଂରେଜୀ ଭାଷାକୁ ପରିତ୍ୟାଗ କରିବାପାଇଁ ଜାତି ଆଜି ସଂକଳ୍ପବଦ୍ଧ ହେଲେବି, ତାହା ଜ୍ୱର ରୋଗୀର ସାନ୍ନିପାତିକ କ୍ରିୟାକଳାପ ଭଳି ମନ ଭିତରେ ଶଂକା ଜାଗ୍ରତ କରୁଛି ।

ଇଂରେଜୀ ହେଉ ବା ଆଂଚଳିକ ଭାଷା ହେଉ, ସବୁପ୍ରକାର ଅଭିବ୍ୟକ୍ତିର ମାଧ୍ୟମ ଆଜି ସାଧାରଣ ଜନତା ପାଖରେ ଅର୍ଥନୈତିକ ପରାଜୟର କାରଣରୂପେ ଦଂଡାୟମାନ କହିଲେ ଅତ୍ୟୁକ୍ତି ହେବନାହିଁ । ଇଂରେଜ ଅମଳରେ ଯେଉଁ ଇଂରେଜୀ ଭାଷାକୁ ଗୋଲାମୀର ପରିଚ୍ଛଦ କୁହାଯାଉଥିଲା, ସ୍ୱାଧୀନୋତ୍ତର ଯୁଗରେ ତାହା ଆଧିପତ୍ୟ ଏବଂ ଆଭିଜାତ୍ୟର ପୋଷାକରୂପେ ସର୍ବ କ୍ଷେତ୍ରରେ ସମ୍ମାନିତ ଏବଂ ଆଦୃତ । 'ଏକ ପର୍ସେଂଟ' ଇଂରେଜୀ ପଢୁଆ ଲୋକଂକର 'କାଷ୍ଠାସନ ଆଧିପତ୍ୟ' ପାଖରେ ଗୋଟାଏ ସ୍ୱାଧୀନ ଜାତି ଦୀର୍ଘ କୋଡ଼ିଏବର୍ଷ ଧରି ଅପମାନିତ ଭାବେ ଠିଆହୋଇ ରହିବା କମ୍ ଅନୁଶୋଚନାର ବିଷୟ ନୁହେଁ । ଇଂରେଜୀ ଉଠିଗଲେ ଯେ ସେଇ ସଂଖ୍ୟାଲଘୁ ଲୋକଂକର ଆଧିପତ୍ୟ ଲୁଚିଯିବ, ଏହା ଚିଂତା କରିବା ପାଗଳାମି ବିଷୟ । କାରଣ ସ୍ୱାଧୀନତାର ଦୀର୍ଘ କୋଡ଼ିଏବର୍ଷ ମଧ୍ୟରେ ସେଇ 'ଏକ ପର୍ସେଂଟ' ଇଂରାଜୀ ପଢୁଆ ଲୋକ ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ଯେଉଁ ପ୍ରାଧାନ୍ୟ ହାସଲ କରି ସାରିଛଂତି, ତାହା ଇଂରେଜୀ ଉଠିବା ପରେ ଆହୁରି ବଳବତ୍ତର ହୋଇଯିବ । ତାଂକ ଅଂତେ ତାଂକର ପୁଅ ନାତି ମଧ୍ୟ ସେହି ଆଭିଜାତ୍ୟର ଖୋଳପା ମଧ୍ୟରେ ଆତ୍ମ ପ୍ରତିଷ୍ଠା କରି ରହିବେ ।

ହିନ୍ଦୀକୁ ରାଷ୍ଟ୍ରଭାଷା କରିବାଲାଗି ଯେଉଁମାନେ ଗଳା ଫାଡ଼ି ଚିତ୍କାର କରନ୍ତି ସେମାନଙ୍କ ପୁଅ ଝିଅ ମଧ୍ୟ କନଭେଣ୍ଟରେ ଇଂରେଜୀ ପାଠ ପଢ଼ନ୍ତି । ମୌଳିକ ତାଲିମର ପ୍ରଚଳନ ପାଇଁ ଆବେଗପୂର୍ଣ୍ଣ ବକ୍ତୃତା ଝାଡ଼ୁଥିବା ମନ୍ତ୍ରୀ ଏବଂ ବେବର୍ତ୍ତା-ମାନେ ନିଜର ପିଲାପିଲିଙ୍କୁ କେବେ ବି ମୌଳିକ ସ୍କୁଲରେ ତାଲିମ ଦେଉଥିବା ଦୃଷ୍ଟିଗୋଚର ହୁଏନାହିଁ । କାରଣ ସେମାନେ ଭଲଭାବେ ଜାଣନ୍ତି ଯେ ଭାରତର ଶାସକଗୋଷ୍ଠୀ ତିଆର କରିବାପାଇଁ ଇଂରେଜୀ ଶିକ୍ଷାର ପ୍ରଚଳନ ହୋଇଥିଲା । ଭାରତରେ ଇଂରେଜୀ ଶାସନକୁ ଉଚ୍ଛେଦ କରିବାପାଇଁ ଯେଉଁମାନେ ଆନ୍ଦୋଳନ କରୁଥିଲେ, ସେମାନେ ସମସ୍ତେ ସମାଜ-ଶାସ୍ତ୍ରୀ, ସମାଜ-ସଂସ୍କାରକ, ଏପରିକି ସଂସ୍କୃତିବନ୍ତ ସ୍ୱପ୍ନଦ୍ରଷ୍ଟ ନୁହନ୍ତି । ତାହା ହୋଇଥିଲେ ଇଂରେଜମାନଙ୍କୁ ବିତାଡ଼ିତ କରିବା ସଙ୍ଗେ ସଙ୍ଗେ ଭାରତୀୟ ସମାଜର ଗ୍ରାଞ୍ଚ ବଦଳି ଯାଇଥାନ୍ତା । ସେଇଭଳି ପରିବର୍ତ୍ତିତ ଗ୍ରାଞ୍ଚ ଭିତରେ ଇଂରେଜୀ ଶିକ୍ଷା ଆପେ ଆପେ ଅପସରି ଯାଇ ହିନ୍ଦୀ, ହିନ୍ଦୁସ୍ତାନୀ ବା ଆଉ କୌଣସି ରାଜଭାଷା ଆସିଥିଲେ କାହାରି ଭିନ୍ନ କହିବାର ନଥିଲା ।

କିନ୍ତୁ ସ୍ୱାଧୀନତାର ଦୁଇଦଶନ୍ଧି ମଧ୍ୟରେ ଇଂରେଜୀ ଶିକ୍ଷା ଏବଂ ଇଂରେଜୀ ସଭ୍ୟତାର ଗ୍ରୁପକୁ ଭାରତୀୟ ସମାଜରେ ଆହୁରି ଦୃଢ କରାଇ କଳକାରଖାନା ଏବଂ ବୈଜ୍ଞାନିକ ପ୍ରମତ୍ତର ବାଗଡୋରକୁ ପୁଞ୍ଜିପତି ବା ଲୁଟପାହୁଆ ମ୍ୟାନେ-ଜରିଆଲ ଗୋଷ୍ଠୀ ହାତରେ ସମର୍ପଣ କରି ସାଧାରଣ ପରିବାରର ଲୋକଙ୍କୁ ଇଂରେଜୀ ଶିକ୍ଷାରେ ନିରୁତ୍ସାହିତ କରିବା ଆମ ଦେଶର ଭାଷା-ବେବର୍ତ୍ତାମାନଙ୍କର ପ୍ରବଞ୍ଚନାର କପଟପାଶା ଛଡ଼ା ଆଉ କ'ଣ ହୋଇପାରେ ?

କଲେଜ, ସ୍କୁଲ ପରିଭଳି ସୁଲଭ ଶିକ୍ଷାନୁଷ୍ଠାନରୁ ଇଂରେଜୀ ପାଠକୁ ବିତାଡ଼ିତ କରି ପୋଷ୍ଟ ଗ୍ରାଜୁଏଟ ଶ୍ରେଣୀର ଗବେଷଣା ପାଠ୍ୟକ୍ରମରେ ଇଂରାଜୀ ଜ୍ଞାନକୁ ଅନିବାର୍ଯ୍ୟ କରିଦେଲେ, ଏ ଦେଶରେ ପୁଞ୍ଜିପତି କଳ ମାଲିକ, ବଡ଼ବଡ଼ ସୁବିଧାଭୋଗୀ ହାକିମହୁକୁମା ଏବଂ ମନ୍ତ୍ରୀଙ୍କ ବଂଶଧରମାନେହିଁ କେବଳ ଉଚ୍ଚ ଜ୍ଞାନ, ଉଚ୍ଚ ମର୍ଯ୍ୟାଦା ଏବଂ ଉଚ୍ଚ ପଦବୀ ହାସଲ କରିବାକୁ ସୁବିଧା ପାଇପାରିବେ । ଏହା ଯେ କେଉଁ ସ୍ତରର ସମାଜବାଦୀ ବ୍ୟବସ୍ଥା, ତାହା ସହଜେ ବୁଝି ହୁଏନାହିଁ ।

ବ୍ରିଟିଶ ଅମଳରେ ଇଂରେଜୀ ଶିକ୍ଷା ସୁଲଭ୍ୟ ହୋଇ ପାରୁନଥିବାରୁ ସେତେବେଳେ ଅଳ୍ପସଂଖ୍ୟକ ସ୍ୱଚ୍ଛଳ ଲୋକ ଇଂରେଜୀ ପଢ଼ି ଅଫିସ ଦପ୍ତରର କାଷ୍ଠାସନରେ ବସିଲାବେଳେ ସାଧାରଣ ଜନତାଠାରୁ ସେମାନଙ୍କର ଦୂରତ୍ୱ ସତେ ଯେମିତି କନ୍ୟାକୁମାରୀଠାରୁ କାଶ୍ମୀର ପର୍ଯ୍ୟନ୍ତ ଲମ୍ବି ଯାଇଥିଲା ।

ଅନେକେ ସେତେବେଳେ ଭାବୁଥିଲେ ଯେତେ ଯେମିତ ସେ କାଷ୍ଟାସନ ଗୁଡ଼ିକ ତାଂକଲାଗି ବକିଂଘାମ ରାଜପ୍ରାସାଦରୁ ପାର୍ଶଲ ହୋଇ ଆସିଛି ।

କିଂତୁ ଭାରତୀୟ ଆଂଦୋଳନର ତୀବ୍ରତା ଯେତିକି ଆଗକୁ ଆଗକୁ ବଢିଲା, ସେତିକି ଇଂରେଜ ପଢୁଆ କାଷ୍ଠାସନ ଅଧିକାରୀମାନଂକର ଚେତନା ଜାଗ୍ରତ ହେବାକୁ ଲାଗିଲା । ସେମାନେ ତେଣିକି ଭାବିବାପାଇଁ ବାଧ୍ୟ ହେଲେ ଯେ, ଅଫିସ ଦପ୍ତରରେ କିରାଣୀ ଅଫିସର ବସିବାଲାଗି ବ୍ୟବହୃତ କାଷ୍ଠାସନ ସାତସମୁଦ୍ର ଦରିଆପାରିରୁ ଅଣାଯାଇ ନାହିଁ । ତାହା ଭାରତୀୟ ଜଂଗଲଜାତ ଦ୍ରବ୍ୟରେ ଭାରତୀୟ କାରିଗରଂକ ଦ୍ୱାରା ନିର୍ମିତ । ସ୍ୱାଧୀନତା ଆଂଦୋଳନ ଭିତରେ ବହୁ ଉଚ୍ଚ ଶିକ୍ଷିତ ଇଂରାଜୀ ପଢୁଆ ଲୋକ ଯୋଗଦେବାରୁ ଇଂରେଜୀ ପଢୁଆ ହାକିମ ଅଫିସରମାନଂକ ମନରେ ଯାହାହେଉ ଟିକିଏ ସାଂତ୍ୱନା ଆସିଲା । ତା' ନହେଲେ ସେମାନେ ଭାବୁଥିଲେ ଇଂରେଜଂକ ପରେ ପରେ ହୁଏତ ଏମାନଂକ ବଂଶ ବି ଅବଶ୍ୟଂଭାବୀରୂପେ ଭାରତରୁ ନିପାତ ହୋଇଯିବେ ।

ସ୍ୱାଧୀନତା ପରେ ଦେଶରେ କଳକାରଖାନାର ପ୍ରସାର ଏବଂ ବୈଜ୍ଞାନିକ ପ୍ରଗତି ଦ୍ୱାରା ଇଂରେଜୀ ଶିକ୍ଷାର ପ୍ରାଧାନ୍ୟକୁ ଅନିବାର୍ଯ୍ୟ କରି ଦିଆଗଲା । ଇଂରେଜଂକ ଅମଳରେ ଯେଉଁ ଶିକ୍ଷାନୁଷ୍ଠାନ ଗୁଡ଼ିକ ସ୍ୱଚ୍ଛଳପରିବାରର ହସ୍ତଗତ ମହାଲ ଅଂତର୍ଭୁକ୍ତ ଥିଲା, ସ୍ୱାଧୀନତା ପରେ ତାହା ସର୍ବସାଧାରଣଂକ ଲାଗି ଅବାରିତ ହୋଇଗଲା । ଦ୍ୱିତୀୟ ମହାଯୁଦ୍ଧର ପରବର୍ତ୍ତୀ କାଳରେ କୃଷିଜୀବୀଂକ ସ୍ୱଚ୍ଛଳ ଅବସ୍ଥା ସାଂଗକୁ ଦେଶରେ କଳକାରଖାନାର ପ୍ରସାର ଏବଂ ଯୋଜନାମୂଳକ ଉନ୍ନୟନ କାର୍ଯ୍ୟରେ ଅପର୍ଯ୍ୟାପ୍ତ ଧନବ୍ୟୟ ଫଳରେ ସାଧାରଣ ପରିବାରର ଲୋକଂକର ଆର୍ଥିକ ଅବସ୍ଥାରେ ଯେଉଁ କ୍ରମ ପରିବର୍ତ୍ତନ ସାଧିତ ହେବାକୁ ଲାଗିଲା, ସେଥିରେ ସ୍କୁଲ କଲେଜର ସଂଖ୍ୟା ବଢିଗଲା ଏବଂ ସାଧାରଣ ଗୃହୀ ମୂଲିଆ ପରିବାରର ଲୋକ ମଧ୍ୟ ହରିଜନଂକ ମଂଦିର ପ୍ରବେଶପରି ଶିକ୍ଷା ପ୍ରସାରର ସୁଯୋଗ ନେବାପାଇଁ ଆଗଭର ହୋଇଥିଲେ ।

ଆକୁମାରୀ ହିମାଳୟ ଦେଶର ଚତୁର୍ଦ୍ଦିଗରେ ଉଚ୍ଚ ଶିକ୍ଷାପାଇଁ ଆଜି ଯେଉଁ ପ୍ରବଳ ଆଗ୍ରହ ଏବଂ ଆଲୋଡ଼ନ ସୃଷ୍ଟି ହୋଇଛି — ହୋଇପାରେ ସରକାର ଏତେ ବିପୁଳ ସଂଖ୍ୟାରେ କୋଟି କୋଟି ଯୁବକ ଯୁବତୀଂକୁ ଅଫିସ ଦପ୍ତରରେ ଆସନ ଯୋଗାଇବାକୁ ସମର୍ଥ ହେଉ ନଥିବାରୁ 'କାଷ୍ଠାସନ କ୍ଷମତା ଲୋଲୁପୀ' ଇଂରେଜୀ ଶିକ୍ଷାକୁ ଏ ଦେଶରୁ ବିତାଡ଼ିତ କରିଦେବାକୁ ଚାହାଂନ୍ତି । ତାହାପରେ

ଇଂରେଜୀ ଭାଷା କେବଳ କେତେକ ଉଚ୍ଚ ଶ୍ରେଣୀର ଲୋକଂକ ମହତ୍ତ୍ୱପୂର୍ଣ ପଦ ପଦବୀର ସ୍ମାରକ ହୋଇ ରହିଯିବ । ତେଣିକି କେବଳ ମଂତ୍ରୀ, ପୁଂଜିପତି କଳ ମ୍ୟାନେଜର ଓ ଆଗରୁ ଇଂରେଜୀ ପଢି ବଡ଼ ବଡ଼ ପାହିଆ ହାସଲ କରିଥିବା ଉଚ୍ଚ ଅଫିସର ତଥା ସଭ୍ରାଂତ ପରିବାରର ଲୋକେ ଇଂରେଜୀ ପାଠ ପଢିବେ ଏବଂ ବୁଝିପାରିବେ । ଇଂରେଜୀ ଶାସକମାନେ ଇଂରେଜୀ ପଢୁଆ ଲୋକଂକୁ ବଚସ୍କର କରି ରଖିବା ଲାଗି ଅଫିସ ଦପ୍ତରରେ ଖଂଡ଼େଲେଖାଏଁ କାଠର ଆସନ ଯୋଗାଇ ଦେଉଥିଲେ । ଏଣିକି ସେ କାଠ ଆସନ ଯାଗାରେ ଇଛାତରେ ତିଆରି ସୋଫା ଓ ଟେବୁଲ ଚଉକୀ ବସ୍ତିଯିବ । କାରଣ ଇଂଜିନିୟରିଂ ଶିଳ୍ପର ଦ୍ରୁତ ପ୍ରଚାର ବେଳେ ଆଉ କାଠ ଆସନର ଆବଶ୍ୟକତା ରହିବ ନାହିଁ । ତେଣିକି ଇଂରେଜୀ ପଢୁଆ ବଡ଼ ବଡ଼ ହାକିମମାନେ ଲଫ୍ଟ ଉପରେ ଚଢି ଚେଂବର ଭିତରେ ପଶିଲାମାତ୍ରେ ଦୁଆର ମୁହଁର କାଂଥରେ ଅଦୃଶ୍ୟ ବଳୁଳା ତାର ବଡ଼ ସଯୋଜିତ ନାଲି ଆଲୁଅ ଜଳିଉଠିବ । ଏଇ ନାଲି ଆଲୁଅର ସଂକେତ ହେଉଛି ହାକିମଂକ ଚେଂବର ଭିତରେ ବିନାନୁମତିରେ ପଶିବାପାଇଁ ସାଧାରଣ ଲୋକଂକର ଅଧିକାର ନାହିଁ !

ଇଂରେଜମାନେ ଭାରତ ଛାଡ଼ିବାର କୋଡ଼ିଏବର୍ଷ ପରେ ସେ ଦିନର ଗୋଲାମୀ ସତକରୂପେ ଘୃଣିତ ଏବଂ ଅପମାନିତ ଇଂରେଜୀ ରାଜଭାଷା ଆଜି ଭାରତରେ କିପରି ସମ୍ମାନିତ ସୁବିଧାଭୋଗୀ ଶ୍ରେଣୀର ମହାର୍ଘ ଜୀନଗରିମାର ପତାକାଷ୍ଟାରୂପେ ସଂରକ୍ଷିତ ହେବାକୁ ଯାଉଛି, ତାହା ଦେଖିଲେ ଏ ଦେଶରେ ଗଣତଂତ୍ର ଏବଂ ସାମ୍ୟବାଦ ଉଭୟେ ସଫଳ ହେବବୋଲି ମନଭିତରେ ସନ୍ଦେହ ରହିଯାଏ !





## ।। ଭାଷା ସମସ୍ୟା ଓ ସାହିତ୍ୟକର ଦୃଷ୍ଟିକୋଣ ।।

କଟକ ସହରରେ ଇଂରେଜୀ ରାଜଭାଷାର ପକ୍ଷ ସମର୍ଥନ ପାଇଁ ଆହୂତ ସଭାଟିଏ ଇଂରେଜୀ ବିରୋଧୀ ସଭାରେ ପରିଣତ ହେଲା । ଇଂରେଜୀ ଭାଷାର ପକ୍ଷ ସମର୍ଥନଲାଗି ଯେଉଁ ସଭା ଡକା ଯାଇଥିଲା, ତାକୁ ନିଶ୍ଚୟ ବୁଦ୍ଧିଜୀବୀ ଲୋକ ଡକାଇଥିବେ । ସେ ସଭାକୁ ଯେଉଁ ଉତ୍ସାହପ୍ରବଣ ବ୍ୟକ୍ତିମାନେ ଭାଂଗିଦେଲେ ସେମାନେ ବି ଯେ ନିଶ୍ଚୟ ବୁଦ୍ଧିଜୀବୀ, ଏଥିରେ ସନ୍ଦେହର ଅବକାଶ ନାହିଁ । ତେବେ ଉଭୟ ଶ୍ରେଣୀର ବିଦ୍ୱାନ ବୁଦ୍ଧିଜୀବୀଙ୍କ କ୍ରିୟାକାଂଡ ଭିତରେ ବିବେକବୋଧର ଯେଉଁ ପରାଜୟ ଘଟିଚି, ତାହାର ଆଲୋଚନା ଏଠାରେ ଭାଷା ସଂସ୍କୃତିର ଅଭିବୃଦ୍ଧି ଦୃଷ୍ଟିରୁ ପ୍ରୟୋଜନୀୟ ମନେ ହେଉଚି ।

ଇଂରେଜୀ ରାଜଭାଷାର ସପକ୍ଷ ସଭାରେ ଜଣେ ଅବସରପ୍ରାପ୍ତ ଅଫିସରଂକୁ କୁଆଡ଼େ ବକ୍ତାରୂପେ ସୁନିର୍ବାଚିତ କରାଯାଇ ଥିଲା । ସେ ମହାଶୟ ଇଂରେଜୀ ଭାଷା ସପକ୍ଷରେ ଯୁକ୍ତି ଦେଖାଇ କହିଲେଯେ, ଯଦି ଇଂରେଜୀ ଭାଷାକୁ ଏ ଦେଶରେ ପ୍ରଶାସନିକ ଅଧିକାରରୁ ବିଚ୍ୟୁତ କରି ଦିଆଯାଏ, ତାହାହେଲେ ହାକିମ ମାଜିଷ୍ଟ୍ରେଟଂକ ପାଖରେ ଏପରି ଅବସ୍ଥା ସୃଷ୍ଟିହେବ— ଯାହାଫଳରେ ସେମାନେ ଜନସାଧାରଣଂକ ହାରି ଗୁହାରି ବୁଝିପାରିବେ ନାହିଁ । ଇଂରେଜୀ ଭାଷା କହିଲେ ଅଫିସରମାନେ ଯେମିତି ଆଗ୍ରହରେ ଶୁଣଂତି, ଅନ୍ୟ ଭାଷାପ୍ରତି ସେମାନେ ସେଇ-ପରି ଶ୍ରଦ୍ଧା ସମ୍ମାନ ଦେଖାଇ ପାରିବେ ନାହିଁ ! କହଂତୁ ଭଲା ଇଂରେଜୀ ଭାଷା ସପକ୍ଷରେ ଏ କଣ କୌଣସି ବୌଦ୍ଧିକ ଯୁକ୍ତିର କଂଠସ୍ୱର ? ଏବଂ ଏଇ କଂଠସ୍ୱର ଯେଉଁମାନଂକ ମୁଖ ଗହ୍ୱରରୁ ନିର୍ଗତ ହେଉଛି, ସେମାନଂକ ସଭାକୁ ଭାଂଗିଦେବା ବା ଦରକାର କେଉଁଠି ? ସେମାନଂକ ସଭାଯେ ବହୁଦିନରୁ ଭାଂଗିଗଲାଣି !

ବିଚାରିବାର କଥା ହେଉଛି ଯେ, ଏପରି ସଭା ଭାଂଗିବାଦ୍ୱାରା ଓଡ଼ିଆ ସାହିତ୍ୟରେ ତାରୁଣ୍ୟ ପ୍ରମାଣିତ ହୁଏନାହିଁ । ପୁରୁଣା ଅବସରପ୍ରାପ୍ତ ହାକିମଂକ ଓକିଲାତି ଦ୍ୱାରା ଇଂରେଜୀ ଭାଷା ଭାରତୀୟ ରାଜଭାଷା ପଦରେ ତିଷ୍ଠି ରହି ମଧ୍ୟ ପାରିବ ନାହିଁ । ଏପରି ପୁରୁଣା ଦେଶୀ ସାହେବମାନଂକ ଚାକିରି ଆରଂଭ ବେଳକୁ ହୁଏତ ଆଇନ ଅଦାଲତରେ ଜେରା କଲାବେଳେ ଓକିଲ ମାଜିଷ୍ଟ୍ରେଟ କେତେ କେତେ ଗାଉଁଲି ଶବ୍ଦର ଇଂରେଜୀ ପ୍ରତିଶବ୍ଦ ଖୋଜି ପାଇବାକୁ ଗଳଦ୍‌ଘର୍ମ ହୋଇ ଯାଉଥିଲେ । କିଂତୁ ଆଜି ଯଦି ଇଂରେଜୀ ଭାଷାରେ ପୃଥିବୀର ଅଧା ଡଜନ ବିଶିଷ୍ଟ ଲେଖକଂକ ନାମ ଧରାଯାଏ, ତାହାହେଲେ ଭାରତୀୟ ଲେଖକ ତା' ଭିତରେ ନିଶ୍ଚୟ ରହିସିବେ !

ତେଣୁ ଇଂରେଜୀ ହେଉ ବା ହିଂଦୀ ହେଉ, ବଂଗଳା ହେଉ କିଂବା ଆମ ନିଜ ମାତୃଭାଷା ଓଡ଼ିଆ ହେଉ — ଭାଷା ସମସ୍ୟାକୁ ରାଜନୈତିକ ଶକ୍ତିମାନେ ଯେଉଁ କାରଣରୁ ଯେତେବେଳେ ଯେଉଁ ପ୍ରକାର ଦୃଷ୍ଟିଭଂଗୀରେ ଦେଖଂତି, ସାହିତ୍ୟିକମାନେ ଠିକ୍ ତାଂକରି ଜୋତା ଖୋଜ ଉପରେ ଗୋଡ଼ ପକାଇ ଚାଲିବା ଅନୁଚିତ ବ୍ୟାପାର । ଭାରତରେ ଭାଷାଗତ ସମସ୍ୟାଟା ରାଜନୀତିଜ୍ଞଂକ ପାଖରେ ଯାହା, ସାହିତ୍ୟିକ ପାଖରେ ଠିକ୍ ସେଇଆ ନୁହେଁ । ତାହା ହୋଇଥିଲେ ଆମର ମଂତ୍ରୀମାନଂକୁ ଯେମିତି ପୃଥିବୀର ଲୋକେ ଚିହ୍ନିପାରଂତି ନାହିଁ, ଆମ ସାହିତ୍ୟିକ କୃତୀ ଗୁଡ଼ିକ ସେମିତି ପୃଥିବୀବାସୀଂକ ଅଗୋଚରରେ ରହିଯିବ । ସେଇହେତୁ ସାହି-ତ୍ୟିକମାନେ ଭାଷା ସମସ୍ୟାକୁ ନିଜର ଦୃଷ୍ଟିକୋଣରୁ ବିଚାର କରନ୍ତୁ ଏବଂ

ଶିକ୍ଷାବିତ୍ ତଥା ଭାଷା ବିଜ୍ଞାନୀମାନେ ତାର ସମାଧାନ ଦିଅନ୍ତୁ । କଂଟ୍ରୋଲ ଚୁଲ୍ଲି ବେପାରଠାରୁ ଭାଷା ସମସ୍ୟା ପର୍ଯ୍ୟନ୍ତ ସବୁ କଥାକୁ ଦଳ ଦୃଷ୍ଟିରୁ ବିଚାର କରୁଥିବା ରାଜନୀତିଜ୍ଞମାନଂକ ହାତରୁ ସେ କ୍ଷମତା ଛଡ଼ାଇ ଅଣାଯାଉ ।

ଓଡ଼ିଆ ଭାଷାର ସର୍ବମସ୍ତ ଉନ୍ନତିବିଧାନ ନିମନ୍ତେ ଆଜି ଏକ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଦରକାର । ହିନ୍ଦୀ ରାଷ୍ଟ୍ରଭାଷା କିଂବା ଇଂରେଜୀ ରାଷ୍ଟ୍ରଭାଷାର ସପକ୍ଷ ବିପକ୍ଷରେ ଶକ୍ତି କ୍ଷୟ କରିବା ଆଜି ଆମପାଇଁ ଅବାନ୍ତର ଘଟଣା । କାରଣ ତାହା ଏ ଦେଶର ନିର୍ବୋଧ ଏବଂ ଶଠ ଲୋକଂକ ଦ୍ୱାରା ପରିଚାଳିତ ଗୋଟିଏ କୃତ୍ରିମ ସମସ୍ୟା । ଆମ ଓଡ଼ିଶା ଦେଶର ସାହିତ୍ୟିକମାନଂକର ସାମଗ୍ରିକ ଶକ୍ତି ସମୂହ ଆମ ପାଖରେ ପୁଂଜୀଭୂତ ଦାୟିତ୍ୱ ସମାଧାନ ଦୃଷ୍ଟିରୁ ପର୍ଯ୍ୟାପ୍ତ କି ନୁହେଁ, ତାହା ଯଦି କୌଣସି ଅନୁଷ୍ଠାନର ତଦାରଖ ଦେଖିବାର ସୁଯୋଗ ଥାଆନ୍ତା, ଯଦି ଆମପାଇଁ କାର୍ଯ୍ୟ କରିବା ବା ଆମ ଦ୍ୱାରା କାର୍ଯ୍ୟ କରାଇବାର ଉପଯୁକ୍ତ ନେତୃତ୍ୱ ମିଳନ୍ତା, ତାହାହେଲେ ଏଭଳି ବିଭ୍ରାନ୍ତିକର କାର୍ଯ୍ୟରେ ଶକ୍ତି ଅପଚୟ କରିବା ପାଇଁ ଆମେ ସମୟ ପାଆନ୍ତେ ନାହିଁ ।

ଆମ ପାଖରେ ଆଜି ଅସଲ ପ୍ରଶ୍ନଟି ହେଲା — ଓଡ଼ିଆ ସାହିତ୍ୟ ପୃଥିବୀର କେଉଁ କୋଣରେ ରହିଛି ଏବଂ ସାହିତ୍ୟର ବିକାଶପାଇଁ ସାମୂହିକ ଜାଗରଣ ବା ସଚେତନତା କେଉଁ ପର୍ଯ୍ୟାୟରେ ରହିବା ଉଚିତ ?





## ॥ ଆଶାବାଦୀ ଓ ନିରାଶାବାଦୀ ସାହିତ୍ୟିକ ॥

ଆଜିକାର ଓଡ଼ିଆ ପାଠକଂକ ପାଖରେ ଗୋଟାଏ ଭିନ୍ନ ରୁଚିର ଉଦ୍‌ଭବ ଘଟିଛି ଯେ, ସେମାନେ ଅନ୍ୟର କୁତ୍ସା, ସାମାଜିକ ଚରିତ୍ର ସଂହାର ଏବଂ ଭାବ-ପ୍ରବଣତା ସୃଷ୍ଟିକାରୀ ଉତ୍ତେଜନାମୂଳକ ଲେଖା ଓ ଆଲୋଚନା ପଢ଼ିବାପାଇଁ ଆଗ୍ରହ ପ୍ରକାଶ କରୁଛଂତି । ଚରିତ୍ରଗତ ଦୃଷ୍ଟିରୁ ଏହା ଆଳସ୍ୟ ପରାୟଣ ଜାତିର ଲକ୍ଷଣ । ନିଜେ ଆଳସ୍ୟରେ ବସିରହି କିଛିହେଲେ ଦାବୀ, ପ୍ରତିବାଦର ଆଂଦୋଳନ ନକରି ବା ସେପରି ଆଂଦୋଳନରେ ସାମିଲ ନହୋଇ, ଅନ୍ୟ ଜଣେ କେହି ଶ୍ରେଣୀ-ଶତ୍ରୁଙ୍କୁ ଭର୍ତ୍ସନା କଲାବେଳେ ବୈଠକଖାନାରେ ବସି ତାକୁ ଆଗ୍ରହରେ ଶୁଣିବା, ଏବଂ ପଢ଼ି ଆନଂଦଲାଭ କରିବା କୌଣସି ଜୀବଂତ ଜାତିର ଲକ୍ଷଣ ହୋଇ ନପାରେ ।

ସଂକ୍ଷେପରେ କହିବାକୁ ଗଲେ ଆମଲାଗି ଆଜି ଆଂଦୋଳନକାରୀ ସକ୍ରିୟ ସାହିତ୍ୟ ଏବଂ ସେଇ ଆଂଦୋଳନର ଘାତପ୍ରତିଘାତରେ ମଣିଷଂକ ଭଳି ଗଢି ହେବାର ସକ୍ରିୟ ଏବଂ ସଚେତନ ପାଠକ ବି ଦରକାର । ତା' ନହେଲେ ବହି ଓ ଜୀବନ ଭିତରେ ଯେଉଁଠି ସମ୍ପର୍କ ବିଚ୍ଛିନ୍ନ ହୋଇଯିବ, ସେଠାରେ ହିଁ ଦେଢ଼ କୋଟି ପାଠକଂକ ପାଇଁ ଦେଢ଼ ହଜାର ବହି ଛପା ହେଲାଭଳି ଅବସ୍ଥା ପହଂଚ ଯାଇଥିବ । ସେଇଠାରେହିଁ ସାହିତ୍ୟ ଦ୍ୱାରା ଜୀବନର କୌଣସି ଆବଶ୍ୟକତା ଓ ଅଂଗୀକାର ପୂରଣ ହୁଏବୋଲି କେହିହେଲେ ପାଠକ ହୃଦୟଂଗମ କରିପାରିବେ ନାହିଁ ।

ଲେଖକ ବିଚରାର ଜୀବନରେ ଯଦି ସେଇପରି କେଉଁଠି କେବେ ଦୁର୍ବଳ ମୁହୂର୍ତ୍ତ ଆସିଯାଏ, ତାହାହେଲେ ସେ ନିଜ ଅପେକ୍ଷା ରାଜନୈତିକ ପ୍ରାଣୀମାନଂକୁ ଅଧିକ ବୁଦ୍ଧିମାନ ଏବଂ ସାର୍ଥକ ଜୀବନ ଭାବି ତାଂକଲାଗି ସ୍ଲୋଗାନ ରଚନାରେ ବ୍ୟସ୍ତ ରହିଯାଏ । କାରଣ ସେ ନିଜ ଆଖି ଆଗରେ ଦେଖେ ଯେ ରାଜନୀତିକ ଲୋକମାନେ ଯାହା କହୁଚଂତି, ଶ୍ରୋତାମାନେ ତାହା ନିଜ ଜୀବନର ବ୍ୟାଖ୍ୟାନ ଶୁଣିଲା ଭଳିଆ ପାଖକୁ ଧାଇଁ ଆସୁଛଂତି । ଯଦ୍ୟପି ବକ୍ତାର ବ୍ୟାଖ୍ୟାନ ତାଂକ ନିଜ ଆଚରଣରୁ ଭିନ୍ନ — ପୁସ୍ତକଗତ ଏବଂ ହୁଏତ ପେଷାଦାର ବି — ତଥାପି ଲୋକେ ଯେ ତାଂକୁ ଶୁଣୁଛଂତି; ଏହାହିଁ ସାହିତ୍ୟକର ଚକ୍ଷୁକୁ ବିସ୍ଫାରିତ କରି-ଦେବାଭଳି ବଡ଼ କାରଣ ହୋଇଯାଏ । ଅସ୍ଥିର ଚିତ୍ତ ସାହିତ୍ୟକର ଯଦି ସେହି-ଠାରେ ନିଜ ସମ୍ପର୍କରେ କିଛି ଆତ୍ମଗ୍ଲାନି ପ୍ରକାଶ ପାଇବାର ଅବସର ଆସେ, ତାହାହେଲେ ଦେଶରେ ପେଶାଦାର ରାଜନୀତିକ ଲୋକଂକୁ ଛାଡ଼ି ଅନ୍ୟସବୁ ବୁଦ୍ଧିଜୀବୀ ଲୋକଂକର ପରାଜୟର ପଥ ସୁଗମ ହୋଇଯାଏ ।





## ॥ କ୍ଷୀଣକଣ୍ଠା ଓଡ଼ିଆ ପତ୍ରିକା ॥

ପତ୍ରପତ୍ରିକା ପ୍ରକାଶନ କ୍ଷେତ୍ରରେ ଓଡ଼ିଆ ଭାଷାର କ୍ରମବିକାଶ ଯେ ୧୬୦ ବର୍ଷରୁ ଅଧିକ ନୁହେଁ, ଏକଥାକୁ ଐତିହାସିକ ତଥ୍ୟ ଦୃଷ୍ଟିରୁ ସ୍ୱୀକାର କରିବାକୁ ପଡ଼ିବ । ଊନବିଂଶ ଶତାବ୍ଦୀର ମଧ୍ୟଭାଗବେଳକୁ ଭାରତରେ ମାତ୍ର ତିନୋଟି ଭାଷା — ଓଡ଼ିଆ, ପଂଜାବୀ ଏବଂ ଅସମୀୟାକୁ ଛାଡ଼ିଦେଲେ — ଆଉ ସମସ୍ତ ଲିଖିତ ଭାଷାରେ ପତ୍ରପତ୍ରିକା ମୁଦ୍ରିତ ତଥା ପ୍ରକାଶିତ ହୋଇସାରିଥିଲା । ଅପାରଗ ଭାଷା ତ୍ରୟ ମଧ୍ୟରୁ ଓଡ଼ିଆ ସାହିତ୍ୟର ବଳିଷ୍ଠ ପରଂପରା ସେତେବେଳେ ଅନ୍ୟ ଯେକୌଣସି ଭାରତୀୟ ଭାଷାଠାରୁ ପଛରେ ପଡ଼ିନଥିଲେବି ମୁଦ୍ରାଯଂତ୍ର ପ୍ରତିଷ୍ଠାର ସୁଯୋଗ ନପାଇବା ହେତୁ ଏହି ବଳିଷ୍ଠ ଭାଷା ପ୍ରକାଶନ ଜଗତର ସୂର୍ଯ୍ୟାଲୋକକୁ ଆସି ପାରି ନଥିଲା ।

ଦୀର୍ଘ ୧୬୦ ବର୍ଷ ବ୍ୟାପୀ ସଂଗ୍ରାମଶୀଳ କ୍ରମ ସଂପ୍ରସାରଣ ଯୁଗରେ ଓଡ଼ିଆ ସାହିତ୍ୟ ପତ୍ରିକାମାନଙ୍କ ମଧ୍ୟରୁ ମାତ୍ର ଦୁଇଟି ପତ୍ରିକା ଏଯାବତ୍ ତିନିଦଶକରୁ ଉର୍ଦ୍ଧ୍ୱ ପରମାୟୁ ଉପଭୋଗ କରିବାପାଇଁ ସମର୍ଥ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଗୋଟିଏ ହେଲା "ସହକାର" ।

ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧର ସନ୍ଧିକ୍ଷଣରେ ଜାତୀୟ ଆନ୍ଦୋଳନର ଧାରା ପ୍ରବାହକୁ ସାହିତ୍ୟକ ଯୁଗ ଚେତନା ମାଧ୍ୟମରେ ମହିମାନ୍ୱିତ କରିଥିବା ବଳିଷ୍ଠ ଏବଂ ପ୍ରଭାବଶାଳୀ "ସହକାର" ପତ୍ରିକା ମାତ୍ର ୩୩ ବର୍ଷର ଅସମ୍ପୂର୍ଣ୍ଣ ଜୀବନ ସଂଗ୍ରାମରେ କ୍ଷତବିକ୍ଷତ ହୋଇ ଅକାଳରେ ବିଲୟ ଭଜିଥିଲା ।

"ସହକାର"ଭଳି ବଳିଷ୍ଠ ସାହିତ୍ୟ ପତ୍ରିକାର ଉତ୍ତରାଧିକାରୀ ନହେଲେ ବି ସହକାର ଯୁଗର ସାହିତ୍ୟରେ ରସ ବିବିଧତା ପରିବେଷଣଲାଗି ହାସ୍ୟ ରସ ସମାଲୋଚନାମୂଳକ "ଡଗର" ପତ୍ରିକା ଆଧୁନିକ କାଳର ବୟୋଜ୍ୟେଷ୍ଠ ପତ୍ରିକା ରୂପେ ଦ୍ୱାତ୍ରିଂଶ ବର୍ଷରେ ପଦାର୍ପଣ କରିଛି ।

ଅବଲୁପ୍ତ ସାହିତ୍ୟ ପତ୍ରିକା ମଧ୍ୟରେ ସ୍ୱନାମଧନ୍ୟ ସାହିତ୍ୟ ରଥୀ ଶ୍ରୀ ବିଶ୍ୱନାଥ କରଙ୍କ ସମ୍ପାଦିତ "ଉତ୍କଳ ସାହିତ୍ୟ" ମାତ୍ର ପଚିଶ ବର୍ଷର ଜୀବନ ସଂଗ୍ରାମରେ ଧରାଶାୟୀ ହେଲା । ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ "ନବଭାରତ", ପତ୍ରିକା ଜଗତରେ ଅକ୍ଷୟ ଆତ୍ମଗୌରବର ଅଧିକାରୀ ହେଲେ ମଧ୍ୟ ଜୀବନର ମାତ୍ର ଦଶଟି ବସନ୍ତ ଉପଭୋଗ କରି ପାରିଲାନାହିଁ । ବାମଣ୍ଡା, ବଲାଙ୍ଗୀର ଓ ମୟୂରଭଞ୍ଜ ରାଜ୍ୟମଣ୍ଡଳୀଙ୍କ ଛତ୍ରଛାୟାରେ ପରିପୁଷ୍ଟ "ଶଙ୍ଖ" "ଚତୁରଙ୍ଗ", ଏବଂ "ଭଞ୍ଜ-ପ୍ରଦୀପ" ଆଦି ସୁ-ସମ୍ପାଦିତ ପତ୍ରିକା ମଧ୍ୟ ସ୍ୱଳ୍ପ କାଳ ମଧ୍ୟରେ ଭାଷା ଜଗତରୁ ନିଶ୍ଚିହ୍ନ ହୋଇଗଲେ । ଏମାନଙ୍କ ଅପେକ୍ଷା ଆଉରି ଉପାଦେୟ ସାହିତ୍ୟ ପତ୍ରିକା ମଧ୍ୟରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଦ୍ୱାରା ସମ୍ପାଦିତ "ସତ୍ୟବାଦୀ", ଶ୍ରୀଯୁକ୍ତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ସମ୍ପାଦିତ "ଆଧୁନିକ" ଔପନ୍ୟାସିକ ଉପେନ୍ଦ୍ର କିଶୋର ଦାସଙ୍କ ସମ୍ପାଦିତ "ବାରୁଣୀ", ପ୍ରଗତିଶୀଳ କବି ସଚ୍ଚିଦାନନ୍ଦ ରାଉତରାୟ ଏବଂ ସମକାଳୀନ ଯୁବ ସାହିତ୍ୟକ ଗୋଷ୍ଠୀ ପରିଚାଳିତ "ଆରତି" ଏବଂ ସର୍ବଶେଷରେ ଓଡ଼ିଆ ଲେଖକ ସହଯୋଗ ସମିତି ପରିଚାଳିତ "ଉଦୟ" ପତ୍ରିକା ଭଳି ବହୁ ଯୁଗୋପଯୋଗୀ ସମାଜ ଚେତନାର ପ୍ରତିନିଧିମୂଳକ ପ୍ରଭାବଶାଳୀ ସାହିତ୍ୟ ପତ୍ରିକା ମାତ୍ର ଏକଦଶକ ଜୀବନକାଳ ମଧ୍ୟରେ ବିଲୁପ୍ତ ହୋଇଗଲେ । ସେମାନଙ୍କ ସହିତ "ମୁକୁର", "ମଧୁଚକ୍ର",

"ପ୍ରଜାଶକ୍ତି" ଭଳି ନୂଆ ସମ୍ପାଦିତ ପୁରାତନ ପତ୍ରିକା ଏବଂ କାଳିନ୍ଦୀ ଚରଣ ପାଣିଙ୍କ ସମ୍ପାଦିତ "ପ୍ରଗତି" ଭଳି ବହୁ କ୍ଷୀଣଜନ୍ମା ପତ୍ରପତ୍ରିକାକୁ ମଧ୍ୟ ତାଲିକାଭୁକ୍ତ କରାଯାଇ ପାରେ । ପାଠକ ଏବଂ ପୃଷ୍ଠପୋଷକ — ଏଇ ଦୁଇ ବଳିଷ୍ଠ ସ୍ତମ୍ଭ ଉପରେ ନିର୍ଭର କରି ସାହିତ୍ୟ ପତ୍ରିକାର ସ୍ଵକୀୟ ସତ୍ତାର ପରିପୁଷ୍ଟି ହୋଇ ଥାଏ । ଓଡ଼ିଶା ରାଜ୍ୟରେ ସାକ୍ଷରତା ଏବଂ ସବଳ ଅଭାବରୁ ଏଯାବତ୍ ସାହିତ୍ୟ ପତ୍ରିକାର ସ୍ଥାୟୀତ୍ୱଲାଗି ଅନୁକୂଳ ବାତାବରଣ ସୃଷ୍ଟି ହୋଇ ପାରିନାହିଁ । କୃଷିଭିତ୍ତିକ ଜୀବନ ପ୍ରବାହକୁ ମଧ୍ୟଯୁଗର ଧର୍ମ ସାହିତ୍ୟ ଏବଂ ଆଂଶିକ ହେଲେବି ରୀତି କାବ୍ୟର ପ୍ରଭାବ ଏପରି ନିବିଡ଼ଭାବେ ଅଙ୍ଗେ ନିହିତ କରି ରଖିଥିଲାଯେ, ସେଥିରେ ଆଧୁନିକ ରୁଚିଶୀଳତାର ବିକାଶ ଏବଂ ଶିଳ୍ପଭିତ୍ତିକ ଜୀବନର ପରିପ୍ରକାଶ ଅଦୌ ସମ୍ଭବପର ହୋଇପାରୁ ନଥିଲା ।

ଶିଳ୍ପଭିତ୍ତିକ ଜୀବନର ସମ୍ପ୍ରସାରଣ ଫଳରେ ଆଧୁନିକ ସାହିତ୍ୟ ପ୍ରତି ଜନସାଧାରଣଙ୍କ ମନ ଭିତରେ ଯେତିକି ଆଗ୍ରହ ବଢୁଛି, ସେତିକି ସଂଖ୍ୟାରେ ନୂଆ ପତ୍ରପତ୍ରିକା ବୃଦ୍ଧି ହେବାରେ ଲାଗିଛି । କିନ୍ତୁ ପ୍ରକାଶିତ ପତ୍ରିକା ଗୁଡ଼ିକ ଜନସାଧାରଣଙ୍କ ଅଗ୍ରଗାମୀ ଅଭିରୁଚିର ଚାହିଦା ମେଣ୍ଟାଇବାକୁ ସମର୍ଥ ହୋଇ ପାରୁନାହାଁନ୍ତି । ଏହାର ବହୁ କାରଣ ମଧ୍ୟରୁ ଗୋଟିଏ କାରଣ ହେଲା — ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ପତ୍ରିକାଭଳି ପୃଥିବୀର ଅତ୍ୟାଧୁନିକ ପରିବେଶ ସହିତ ତାଳଦେଇ ଚାଲିବାଲାଗି ଓଡ଼ିଆ ସାହିତ୍ୟ ପତ୍ରିକା ପାଖରେ ଏ ଯୁଗରେ ମଧ୍ୟ ସବଳର ଅଭାବ ରହିଯାଇଛି । ପରସ୍ପର ନିର୍ଭରଶୀଳ ଉନ୍ନତ ମୁଦ୍ରା-ଯନ୍ତ୍ର ଏବଂ ଲିପି ସଂସ୍କାର ଅଭାବରୁ ଓଡ଼ିଆ ସାହିତ୍ୟ ପତ୍ରିକା ଗୁଡ଼ିକ ଆଧୁନିକ କାଳର ବହୁ ପଛରେ ପଡ଼ି ରହୁଛନ୍ତି । ସେମାନେ ଦୀନହୀନ ବେଶରେ ପାଠକ ପାଖକୁ ଆସିଲା ବେଳକୁ ପାଠକର ମାର୍ଜିତ ରୁଚିବୋଧକୁ ଅନ୍ୟ ଭାଷାର ଅଗ୍ରଗାମୀ ପତ୍ରପତ୍ରିକା ଆକର୍ଷିତ କରି ନେଉଛନ୍ତି ।

ଓଡ଼ିଆ ସାହିତ୍ୟର ବିକାଶ କ୍ଷେତ୍ରରେ ଅନ୍ୟ ପ୍ରତିବନ୍ଧକ ହେଉଛି— ସରକାରୀ, ଅର୍ଦ୍ଧସରକାରୀ ଏବଂ ବେସରକାରୀ ସଂସ୍ଥାର ପୃଷ୍ଠପୋଷକତାର ଅଭାବ । ସାହିତ୍ୟ ଜଗତରେ ଆଧୁନିକ ପୃଷ୍ଠପୋଷକତା ମଧ୍ୟଯୁଗୀୟ ସାମନ୍ତବାଦୀ ପୃଷ୍ଠପୋଷକତା ଠାରୁ ଭିନ୍ନ । ଏ ଯୁଗରେ ପତ୍ରପତ୍ରିକାର ପୃଷ୍ଠପୋଷକତା ବିଜ୍ଞାପନକୁ ହିଁ ବୁଝାଏ ।

ରାଜ୍ୟର ଅନ୍ତକନ୍ଦରେ ଶିଳ୍ପଭିତ୍ତିକ ଜୀବନପ୍ରବାହର ସୁଯୋଗ ନେବା ପାଇଁ କଳକାରଖାନା, ବ୍ୟାଙ୍କ, ବୀମା, ପରିବହନ ସଂସ୍ଥା ତଥା ଦେଶୀ ବିଦେଶୀ

ପଣ୍ୟଦ୍ରବ୍ୟର ବିକ୍ରୟ କେନ୍ଦ୍ର ଗୁଡ଼ିକର ଯେଉଁ ଦ୍ରୁତ ଅଭିବୃଦ୍ଧି ଘଟୁଚି, ତାର ବିନ୍ଦୁ ମାତ୍ର ଆମ ଭାଷାର ସାହିତ୍ୟ ପତ୍ରିକାରେ କୌଣସି ରେଖାପାତ କରୁଚିକି ? ଏ ରାଜ୍ୟରେ କେତେଟି ସାହିତ୍ୟ ପତ୍ରିକା ବୀମା ଓ ବ୍ୟାଂକ ବ୍ୟବସାୟର ବିଜ୍ଞାପନ ପାଆନ୍ତି ? ଯଦି ବ୍ୟାଂକ ଓ ବୀମା ବ୍ୟବସାୟ ପ୍ରସାର ଫଳରେ ଏ ଦେଶରେ ସାହିତ୍ୟ ଏବଂ ସାଂସ୍କୃତିକ ଜୀବନର ମାନଦଂଡ ଊର୍ଦ୍ଧ୍ୱଗାମୀ ନହେଲା, ଯଦି ରାଜ୍ୟବ୍ୟାପୀ ସମ୍ପ୍ରସାରିତ ବର୍ଦ୍ଧିଷ୍ଣୁ କଳକାରଖାନାର ପ୍ରଭାବ ସାମାଜିକ ଜୀବନର ପୂର୍ଣ୍ଣାଂଗ ବିକାଶ ପଥରେ ସହାୟକ ନହେଲା; ଯଦି ପଣ୍ୟଦ୍ରବ୍ୟର ପ୍ରସାରଲାଗି ସୁଯୋଗ ପାଉଥିବା ଶିଳ୍ପପତିମାନେ କେବଳ ଜନସାଧାରଣଙ୍କ ଅର୍ଥନୈତିକ ଜୀବନକୁ ନିଷ୍ପେଷିତ କରି ନିଜ ସ୍ୱାର୍ଥରେ ନିଶ୍ଚିଂତ ରହିଗଲେ, ତାହାହେଲେ ଏଠି ସରକାରଂକ ମଂତ୍ରୀ ଓ ବେବର୍ତ୍ତାମାନେ କଣ ସର୍କସର ଜୋକର ନା ସୁଆଂଗର ମଂତ୍ରୀ, କଣ୍ଟୁଆଲ ସାଜି ଓସ୍ତାଦ ଶିଳ୍ପପତିମାନଙ୍କର ଢୋଲ ପେଁକାଳି ଇଂଗିତରେ ରଂଗମଂଚରେ ପ୍ରବେଶ ପ୍ରସ୍ଥାନଲାଗି ଖାଲି ସଜବାଜ ହୋଇ ବସିରହିବେ ?

•



## ॥ ଲିପି ସଂସ୍କାର ଓ ଭାଷା ପ୍ରସାର ॥

ଭାଷା ଯେତେବେଳେ ପୃଥିବୀରେ ସୃଷ୍ଟିହେଲା, ସେତେବେଳେ ତାହା ଯେଉଁ ଅବସ୍ଥା ଏବଂ ଯେଉଁ କାର୍ଯ୍ୟପାଇଁ ଉଦ୍ଭାବିତ ହୋଇଥିଲା, ଆଜିର ଯୁଗରେ ବ୍ୟାପକ ବୈଷୟିକ ପ୍ରଗତି କ୍ଷେତ୍ରରେ ତାର ପରିସର ଠିକ୍ ସେଇଆ ନୁହେଁ । ମୁଦ୍ରାଯନ୍ତ୍ରର ଆବିଷ୍କାର ଫଳରେ ଭାଷାରେ ଏକ ପ୍ରବଳ କାର୍ଯ୍ୟକାରିତା ଶକ୍ତିର ଉଦ୍ଭବ ଘଟିଛି । ଓଡ଼ିଆ ଭାଷାର ସେଇ କାର୍ଯ୍ୟକାରିତା ଶକ୍ତିର ପରିବ୍ୟାପ୍ତ ଭୂମିକା ଉପରେ ଆଜି ତାକୁ ଭାରତର ଅନ୍ୟ ଯେକୌଣସି ପ୍ରାଂତୀୟ ଭାଷାଭଳି ସରକାରୀ ଭାଷାରୂପେ ପ୍ରଚଳନ କରିବାପାଇଁ ଦାବୀ ଉଠିଛି । ତା' ନହେଲେ ଏ ଭାଷାରେ ଗୌଣରୂପେ ହେଲେବି ସରକାରୀ ମହକୁମାରେ କାର୍ଯ୍ୟ ଆଜିବି ଚାଲୁଛି ଏବଂ ଆଗରୁ ଚାଲୁଥିଲା । ଫିରିଂଗି ଅମଳରେ ଜମିଦାରୀ ସିରସ୍ତା କାମ ବ୍ୟତୀତ ଆଂଶିକରୂପେ କୋର୍ଟ କଚେରୀ କାମ ଏବଂ ଗଡ଼ଜାତ ବା ଦେଶୀୟ ରାଜ୍ୟ ମାନଂକରେ ବହୁ ଶାସନ ସମ୍ବନ୍ଧୀୟ କାମ ଓଡ଼ିଆ ଭାଷା କରିଆସିଛି

କରା ଯାଉଥିଲା । ସ୍ୱାଧୀନତା ପରେ ସ୍ୱାଭାବିକ ଆତ୍ମାଭିମାନର ସହିତ ଆମ ଭାଷାର ସୀମିତ ପରିସରରେ ଯେତେବେଳେ ବ୍ୟାପକ ଅଭିବୃଦ୍ଧିର ସମ୍ଭାବନା ଦେଖାଦେଇଛି, ସେତେବେଳେ ତାହା ଉପରେ କେତେବେଳେ ପୁଣି ଅଧିକୃତ ପରିସରରୁ ତଳକୁ ଖସିଯାଇ ଆଉଥରେ ସରକାରୀ ସ୍ତରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ପ୍ରଶ୍ନ ଉଠୁଛି, ତାହା ଭାବିଲେ କୌତୁହଳର ସୀମା ରହେନାହିଁ ।

କୌତୁହଳର କାରଣଟା ଯାହା ହେଉନା କାହିଁକି, ବର୍ତ୍ତମାନ ଅବସ୍ଥାର ନୂଆଭାବେ ବିଶ୍ଳେଷଣ ଆବଶ୍ୟକ ହେଲାଣି । ମୋଗଲ ପଠାଣ ଅମଳର କଥାକୁ ଛାଡ଼ିଲେ, ଫିରିଂଗି ଅମଳରେ ଯେତେବେଳେ ଓଡ଼ିଆ ଭାଷାରେ କଚିରୀ ସିରସ୍ତା କାମ ଆରଂଭହୁଏ, ସେତେବେଳେ ଏହି ଭାଷାରେ ସାହିତ୍ୟିକ ରୂପ ଯାହା ଥାଉନକାହିଁକି, ବ୍ୟବହାରିକ ରୂପ ନିଶ୍ଚୟ ବଦଳି ଯାଉଥିଲା । ସିରସ୍ତା କାର୍ଯ୍ୟର କ୍ଷିପ୍ରତା ଦୃଷ୍ଟିରୁ ସେତେବେଳେ କରଣୀ ଅକ୍ଷରର ଯେଉଁ ଆଦର ଦେଖାଗଲା, ତାହା ବର୍ତ୍ତମାନକାଳରେ ମର୍ଦ୍ଧ୍ୟାଂତର ଅନୁରୂପ ।

ଏକଥା ଏଠାରେ ଉଲ୍ଲେଖ କରିବାର କାରଣ ହେଉଛିଯେ, ସେ କାଳରେ ବି ଏଇ ଭାଷାକୁ ସରକାରୀ ସିରସ୍ତାରେ ପ୍ରଚଳନ କରାଗଲାବେଳେ ଓଡ଼ିଆ ଲିପିର ପୁରାତନ ଅଂଗାକୃତି ଏବଂ ଗଠନ ପ୍ରଣାଳୀରେ କେତେକ ପରିବର୍ତ୍ତନ ଆଣିବାକୁ ପଡ଼ିଥିଲା । ସେତେବେଳେ ଅବଶ୍ୟ ସବୁ ପ୍ରକାର କାଗଜପତ୍ର ହାତରେ ଲେଖିବାକୁ ପଡୁଥାଏ । ମୁଦ୍ରଣ ବ୍ୟବସ୍ଥାର ସୁପ୍ରଚଳନ ପରେ ବର୍ତ୍ତମାନ ହୁଏତ ଆଉ ସେ ଅସୁବିଧାର ପ୍ରଶ୍ନ ଉଠୁନାହିଁ । କିଂତୁ ମୁଦ୍ରଣ ଯଂତ୍ର ପ୍ରଚଳନ ଦ୍ୱାରା ଚାରିଆଡ଼େ ଭାଷାର ବ୍ୟାପକ ପ୍ରସାର ଏବଂ ଉନ୍ନତି ଘଟିଥିଲେବି ଓଡ଼ିଶା ରାଜ୍ୟରେ ସରକାରୀ ସ୍ତରରେ ତାର ପ୍ରଚଳନଲାଗି ଅସୁବିଧାଟା ଗତ ତିନିଦଶକ ତଳେ ଯେଉଁ ଅବସ୍ଥାରେ ଥିଲା, ବର୍ତ୍ତମାନବି ସେଇଆ ରହିଛି । ଏଇଥିରୁ ପୃଥିବୀରେ ଅଗ୍ରଗାମୀ ସମୟ ସହିତ ଓଡ଼ିଆ ଭାଷା କେତେଦୂର ତାଳ ଦେଇପାରୁଛି, ତାହା ଅନୁଭବ କରାଯାଇ ପାରେ ।

ଭାଷାକୁ ସରକାରୀ ସ୍ତରରେ ପ୍ରଚଳନ କରିବାପାଇଁ ପ୍ରଥମ ଆବଶ୍ୟକତା ହେଉଛି ଟାଇପ୍ ମେସିନ୍ । କିଂତୁ ବିସ୍ମୟର କଥା ଆଜି ରାଜ୍ୟରେ ମିଗ୍ ବିମାନ ଯଂତ୍ରପାତି ତିଆରି ହୋଇଥିଲେବି ଓଡ଼ିଆ ଭାଷାରେ ରାଜକାର୍ଯ୍ୟ ଅଭିଷେକପାଇଁ ଟାଇପ୍ ମେସିନ୍ ଓ ମୁଦ୍ରାଯଂତ୍ରର ନବୀକରଣ ତଥା ଲିପି ସଂସ୍କାର ହୋଇ ପାରୁନାହିଁ ।

ଲିଟି ଫଣ୍ଟ୍ ଓ ମୁଦ୍ରାଯନ୍ତ୍ରର ନବୀକରଣ ଅଭାବରୁ ଓଡ଼ିଆ ପତ୍ରପତ୍ରିକା ମଧ୍ୟ ଆକର୍ଷଣୀୟ ହୋଇ ପାରୁନାହାନ୍ତି । ସାର୍କୁଲେସନ ବା କାଟତି ଦୃଷ୍ଟିରୁ ମଧ୍ୟ ସେଗୁଡ଼ିକ ସେ ଅବସ୍ଥାକୁ ଆସିନାହାନ୍ତି ଯେ, ମୁଦ୍ରାଯନ୍ତ୍ରର ନବୀକରଣ ହୋଇପାରିବ । କିନ୍ତୁ ଆସି ନାହାନ୍ତିବୋଲି ଯଦି କୁହାଯାଏ ସେଇଟା କାହାର ଦୋଷ ବା କାହାର ଦାୟିତ୍ୱ ? ଦୋଷଟା ସାହିତ୍ୟ ପାଠକ ଓ ଗ୍ରାହକମାନଙ୍କ ଉପରେ ଲଦି ଦିଆଯିବା ସହଜ କଥା, କିନ୍ତୁ ଦାୟିତ୍ୱଟା ପ୍ରକାଶକ ଓ ସରକାର ଉଭୟଙ୍କର ବୋଲି କୁହାନଯିବ କାହିଁକି ? ଏକ ଅନୁନ୍ନତ ଜନମଙ୍ଗଳ ରାଷ୍ଟ୍ରରେ ସାହିତ୍ୟ ଓ ସାକ୍ଷରତାର ପ୍ରସାରଲାଗି ସରକାରଙ୍କର ଯେଉଁ ବୈଧାନିକ ଦାୟିତ୍ୱ ରହିଚି ତାକୁ ଏଡ଼ାଇଦେବା ଅକ୍ଷମଣୀୟ ବ୍ୟାପାର ।

ଓଡ଼ିଆ ଭାଷାକୁ ରାଜକୀୟ ସ୍ୱୀକୃତି ସ୍ତରକୁ ଆଣିବା ପ୍ରସଙ୍ଗରେ ଆଉ ଗୋଟିଏ ପରିବେଶ ବିସ୍ତରକୁ ଆଣିବାକୁ ମନେହବ — ତାହା ହେଉଚି ଶିଳ୍ପ ଧନ୍ଦାର ପ୍ରସଙ୍ଗ । ରାଉରକେଲା ଇସ୍ପାତ କାରଖାନା, ପାରାଦ୍ୱୀପ ବନ୍ଦର, ମିଲ୍ କାରଖାନା ଓ ଅନ୍ୟାନ୍ୟ ଖଣି ବାଣିଜ୍ୟ ପ୍ରତିଷ୍ଠାନରେ ଭାରତର ଚତୁର୍ଦ୍ଦିଗରୁ ଯେଉଁ ଜନବଳ ସମବେତ ହୋଇଛନ୍ତି ସେମାନଙ୍କୁ ଓଡ଼ିଆ ଭାଷା ଶିକ୍ଷା ଦେବା ଲାଗି ନିର୍ଦ୍ଦିଷ୍ଟ ଉଦ୍ୟମ ହେବା ଉଚିତ । ସେମାନଙ୍କୁ ସେ ସୁଯୋଗ ଦେବା ଦ୍ୱାରା ଓଡ଼ିଆ ଭାଷା ସାହିତ୍ୟର ଅନୁବାଦ ଓ ପ୍ରସାର କାଳକ୍ରମେ ଅନ୍ୟାନ୍ୟ ଭାଷା ସାହିତ୍ୟରେ ସୁଗମ ହୋଇଯିବ । କଟକ, ଭୁବନେଶ୍ୱରଭଳି ପୁରାତନ ସଂସ୍କୃତି ପୀଠରୁ ଓଡ଼ିଆ ଭାଷା ସାହିତ୍ୟର ବାହ୍ୟ ପ୍ରକୃତି ଯେତେ ସୁଦୂରପ୍ରସାରୀ ହୋଇ ପାରୁ ନାହିଁ ତାହା ଏଇସବୁ ମହାଭାରତୀୟ ଶିଳ୍ପ ନଗରୀରୁ ସହଜସାଧ୍ୟ ହୋଇ ପାରିବାର ସୁଯୋଗ ସମ୍ଭାବନାକୁ ଉପେକ୍ଷା କରାଯିବା ଉଚିତ ନୁହେଁ ।

ତେଣୁ ଓଡ଼ିଆ ଭାଷାର ଦାବୀ ସମ୍ପର୍କରେ ଆନ୍ଦୋଳନକାରୀ ଓ ସରକାର ଉଭୟଙ୍କୁ ଅନୁରୋଧ ଯେ, ସେମାନେ ପରିବର୍ତ୍ତିତ ବାତାବରଣର ବ୍ୟାପକ ସୀମା-ରେଖା ଉପରେ ଓଡ଼ିଆ ଭାଷାକୁ ପ୍ରତିଷ୍ଠିତ କରି ତାକୁ ବିଶ୍ୱ ଦରବାରରେ ସମ୍ମାନିତ କରାନ୍ତୁ । ଭାଷାର ଉନ୍ନତିଲାଗି ଖାଲି କଟକ ସହରରେ ପୁରୁଣା ରଙ୍ଗମଞ୍ଚରେ ବକ୍ତୃତା ଦେଲେ ଚଳିବନାହିଁ । ଭାଷାର ଉନ୍ନତି ଖାଲି ଦରବାରୀ ସ୍ୱୀକୃତିଦ୍ୱାରା ବି ସମ୍ଭବ ନୁହେଁ । ଆଜି ଯେଉଁ ଭାଷା ଓଡ଼ିଶାରେ ସରକାରୀ ଭାଷା ହେବାକୁ ହିକ୍‌ଦାର ତାହା ମଧ୍ୟ ଏପରି ଏକ ବିଶାଳ ବ୍ୟାପକ ଭାଷା ହେବା ଉଚିତ, ଯାହା ସିଂହଭୂମ ମେଦିନୀପୁର ମେଳଣର ସୀମା ସରହଦରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ହେବ ।

ଭାଷାର ଉନ୍ନତି ଆଜି ଖାଲି ବକ୍ତୃତା ବା କେତେଖଣ୍ଡ ଗଳ୍ପ ଉପନ୍ୟାସର ଆଧାର ଉପରେ ନିର୍ଭର କରେନାହିଁ । ଭାଷାର ଉନ୍ନତି ଆଜି କେବଳ ବିଜ୍ଞାନ ଏବଂ ସଂସ୍କୃତି ଉଭୟର ସମପ୍ରାଣତା ଦ୍ୱାରାହିଁ ସମ୍ଭବ । ସାମାନ୍ୟ ଟାଇପ ମେସିନ ଖଣ୍ଡେ ଉଦ୍ଭାବିତ ନହେବା ଫଳରେ ଓଡ଼ିଆ ଭାଷାଟି କିପରି ଏଇ ବୈଜ୍ଞାନିକ ଯୁଗରୁ ଶହଶହ ବର୍ଷ ପଛରେ ପଡ଼ିରହିଛି, ତାହା ଆଜି ଆମେ ଭଲଭାବେ ହୃଦୟଙ୍ଗମ କରିବାର କଥା । ସେଇପରି ସଂସ୍କୃତି ବୋଇଲେ ଯଦି ଆମେ ଖାଲି କଟକ, ପୁରୀ, ବାଲେଶ୍ୱରର ପାଣିପାଗ ବିଳାସ ଉପରେ ନିର୍ଭରକରି ବସିଯାଉ, ତାହାହେଲେ ଆଜିକାର ପରିବ୍ୟାପ୍ତ ପରିସରରେ ଓଡ଼ିଆ ସଂସ୍କୃତିକୁ କାହିଁ କେତେଆଡ଼େ ଅନ୍ୟ ଅଗ୍ରଗାମୀ ସଂସ୍କୃତି ଗିଳି ହଜମ କରିପକାଇବେ । ତେଣୁ ଭାଷାର ଉନ୍ନତିଲାଗି ବିଜ୍ଞାନ ଓ ସଂସ୍କୃତି ଉଭୟଙ୍କୁ ଆଜି ସମାନ ସ୍ତରରେ ସୁଦୂରପ୍ରସାରୀ ଯୋଜନା ପ୍ରଣୟନ କରିବାକୁ ପଡ଼ିବ । ତା' ନକରି ଓଡ଼ିଆ ଭାଷାକୁ କଲିକତାର ମ୍ୟାକ୍‌ମିଲନ କମ୍ପାନୀର ଛପା ବର୍ଣ୍ଣବୋଧ ବହିରୁ କାଢିଆଣି ମଧୁପାଟଣା ସରକାରୀ ପ୍ରେସର ନୂଆ ପାଠ୍ୟବହି ଭିତରେ ଥୋଇ ସମାଜବାଦୀ ହଟଚମଟ ଦେଖାଇଦେଲେ, ତଦ୍ୱାରା ଭାଷା ସାହିତ୍ୟର କୌଣସି ଯୁଗ ପରିବର୍ତ୍ତନ ଆଦୌ ସମ୍ଭବପର ହେବନାହିଁ ।





## ॥ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ॥

ଓଡ଼ିଆ ଭାଷା ଜଗତରେ ବସ୍ତୁଗତ ବିଭବମାନଙ୍କ ମଧ୍ୟରେ ପ୍ରହରାଜଙ୍କ ଭାଷା-କୋଷ ଭଳି ଅମୂଲ୍ୟ ଅବିସ୍ମରଣୀୟ ସମ୍ପଦର ପଟାନ୍ତର ନାହିଁ ।

ପ୍ରହରାଜଙ୍କ ଭାଷାକୋଷ ଓଡ଼ିଶା କାହିଁକି ଭାରତୀୟ ଭାଷା-ଭଣ୍ଡାରରେ ଏକ ଅତୁଳନୀୟ ଜାତୀୟ ସମ୍ପଦ । ଓଡ଼ିଆ ଭାଷା ସାହିତ୍ୟର ସୁପ୍ରସାରିତ ସୁଦୃଢ଼ ଐତିହ୍ୟ ଏବଂ ଏହାର ପ୍ରାକୃତିକ ଭିତ୍ତିଭୂମିକୁ ବିଶ୍ୱଦରବାରରେ ପରିଚିତ କରାଇବାଲାଗି ଯଦି କୌଣସି ଯୁଗଜନ୍ମା ସାଧକ କିଛିହେଲେ ସାଧନାର ଫଳ ଭବିଷ୍ୟତ ବଂଶଧରଙ୍କଲାଗି ସମ୍ପାଦି ଯାଇଥାନ୍ତି — ତାହାହେଲେ ସେମାନଙ୍କ ମଧ୍ୟରେ ଭାଷାକୋଷର ପ୍ରଣେତା ସ୍ୱର୍ଗତଃ ଗୋପାଳ ପ୍ରହରାଜ ନିଶ୍ଚୟ ଅଗ୍ରଗଣ୍ୟ ହେବେ । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳେ ତାଙ୍କ ପ୍ରଣୀତ ମହାନ ଗ୍ରନ୍ଥ

ଆଂଚଳିକ କ୍ଷେତ୍ରରେ ଯେଉଁପ୍ରକାର ସ୍ୱୀକୃତିଲାଭ କରିଥିଲା, ତାହା ସହିତ ତୁଳନୀୟ ହୋଇପାରିଲା ଭଳି ଉତ୍କଳୀୟ ଭାଷା ସାମ୍ରାଜ୍ୟରେ ଅନ୍ୟ କୌଣସି ଅବଦାନ ଆଜିଯାଏ ସୃଷ୍ଟି ହୋଇନାହିଁ ।

କିନ୍ତୁ ଏମିତି ବହୁମୂଲ୍ୟ ବିଷୟ ଯେ ଓଡ଼ିଆ ସାହିତ୍ୟଭଣ୍ଡାରରୁ ଅଧୁନା ଅବଲୁପ୍ତ ସେଇ ଦୁର୍ଲଭ ଜାତୀୟ ସମ୍ପଦର ପୁନରୁଦ୍ଧାରଲାଗି ଆଜିଯାଏ କେହି କୌଣସି ଉଦ୍ୟମ କରୁନାହାଁନ୍ତି । ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ଦୁଇଦଶକ ମଧ୍ୟରେ ବିଭିନ୍ନ ରାଜ୍ୟରେ ଆଂଚଳିକ ଭାଷା ସାହିତ୍ୟର ସମୃଦ୍ଧିଲାଗି ସରକାରୀ ସ୍ତରରେ ଉଦ୍ୟମ ଚାଲିଚି । ପଂଚବାର୍ଷିକ ଯୋଜନାଗତ ସମୃଦ୍ଧିର କଳେବର ମଧ୍ୟରେ ଜାତୀୟ ବା ପ୍ରାଦେଶିକ ଭାଷା ସାହିତ୍ୟର ପୁରାତନ ଜୀର୍ଣ୍ଣ ଅବସ୍ଥାର ନବ ସଂସ୍କାରଲାଗି ସାହିତ୍ୟ ଏକାଦେମୀ ଜରିଆରେ ପ୍ରଚୁର ଅର୍ଥ ବ୍ୟୟ ଚାଲିଚି ।

ସୀମିତ ବା ଅପରିସୀମ ସମ୍ବଳ ମଧ୍ୟରେ ଓଡ଼ିଶାର ପ୍ରାନ୍ତୀୟ ସାହିତ୍ୟ ଏକାଦେମୀର ସଂଚାଳକବୃନ୍ଦ ଉଦ୍ୟମ କରିଥିଲେ, ଭାଷା ଜଗତରୁ ବିସ୍ମୃତର କୋଣାର୍କ ପ୍ରହରାଜଙ୍କ ଭାଷାକୋଷର ପୁନରୁଦ୍ଧାର ସମ୍ଭବ ହୋଇ ପାରିଥାଆନ୍ତା । କିନ୍ତୁ କୌଣସି ନା କୌଣସି କାରଣରୁ ଏହା ଆଜିଯାଏ ସାହିତ୍ୟ ଏକାଦେମୀର ଅପରିହାର୍ଯ୍ୟ କର୍ତ୍ତବ୍ୟସୂଚୀର ଅମଳିନ ସୀମାରେଖା ଭିତରକୁ ଅଣାଯାଇ ପାରୁନାହିଁ !

ଓଡ଼ିଶା ସାହିତ୍ୟ ଏକାଦେମୀର ମୁଖ୍ୟ ସଂଚାଳକ ରୂପେ ଆଜିପର୍ଯ୍ୟନ୍ତ ଯେଉଁମାନେ ଅବସ୍ଥାପିତ ହୋଇଛନ୍ତି, ସେମାନେ ସମସ୍ତେ ଚତୁଃଷ୍ପଦୀ ଜୀବ । ସେମାନଙ୍କର ଦୁଇଟି ଗୋଡ଼ ସାହିତ୍ୟର ବକ୍ଷରେ ଏବଂ ଅନ୍ୟ ଦୁଇଟି ଗୋଡ଼ ରାଜନୀତିର କକ୍ଷରେ ଦୃଢ଼ରୂପେ ଆଧାରିତ ! ମୃତ-ବିଲୁପ୍ତ ସାମନ୍ତବାଦୀ କାଳରେ ସାହିତ୍ୟର କେବଳ ମସ୍ତିଷ୍କଛଡ଼ା ହସ୍ତପଦ ନଥିଲା । ସେହି କାରଣରୁ ସେକାଳରେ କବି ସାହିତ୍ୟିକ ରାଜନଅରର ପୁଷ୍ପ ବାଟିକାର ଲତାପରି ବନାଶ୍ରୟରେ ବଂଚି ପାରୁନଥିଲେ ।

କିନ୍ତୁ ପରବର୍ତ୍ତୀ କାଳରେ ସାହିତ୍ୟିକ ସେଇପ୍ରକାର ଅଚଳ ଏବଂ ବାହୁ-ଗ୍ରସ୍ତାଶ୍ରିତ ଜୀବରୂପେ ରହି ପାରିଲାନାହିଁ । ସ୍ୱାଧୀନତାର ବହୁ ପୂର୍ବରୁ ଏ ଦେଶରେ ସାମ୍ରାଜ୍ୟବାଦୀ ଶାସନକାଳରେ ମଧ୍ୟ ଆତ୍ମପ୍ରତ୍ୟୟଶୀଳ ସାହିତ୍ୟିକ

ଗୋଷ୍ଠୀ ଜନ୍ମହୋଇ ସାରିଥିଲେ । ବିଶ୍ୱକବି ରବୀନ୍ଦ୍ରନାଥ ସେହିମାନଙ୍କ ବଳିଷ୍ଠ ପ୍ରତିନିଧିରୂପେ ବିଶ୍ୱ ଦରବାରରେ ଅଭିନନ୍ଦିତ । ସେ ପ୍ରମାଣିତ କରିସଲେଯେ, ସାମ୍ରାଜ୍ୟବାଦୀ ଶାସକ ପ୍ରଦତ୍ତ କାଠ-ଘୋଡ଼ା (ପୁରସ୍କାର) ଉପରେ ନିର୍ଭର ନକରି ଭାରତୀୟ ସାହିତ୍ୟିକ ନିଜର ଭାଷା-ସାମ୍ରାଜ୍ୟକୁ ଅନନ୍ତ ବିସ୍ତାରି କରିବାରେ ବିଶ୍ୱର କୌଣସି ଶକ୍ତି ତାକୁ ବାଧାଦେଇ ପାରିବନାହିଁ । ରବୀନ୍ଦ୍ରଙ୍କ ପୂର୍ବସୂରି ତଥା ତାଙ୍କରି ସମକାଳୀନ ବଙ୍କିମ, ଶରତ, ସରୋଜିନୀ ଏବଂ ପ୍ରେମଚାନ୍ଦ ଆଦି ଆତ୍ମପ୍ରତ୍ୟୟଶୀଳ ସାହିତ୍ୟିକ ପ୍ରକୃତସ୍ରଷ୍ଟା ଦ୍ୱିପଦ ପ୍ରାଣୀରୂପେ ନିଜର ହସ୍ତପଦ ମସ୍ତିଷ୍କ ସଚ୍ଚାଳିତ ଶକ୍ତି ବଳରେ କାଳଜୟୀ ସାହିତ୍ୟ ରଚନା କରିସଲେ । ଓଡ଼ିଶା ପ୍ରାନ୍ତରରେ ଫକୀରମୋହନ, ରାଧାନାଥ ଏବଂ ଗୋପାଳ ପ୍ରହରାଜଙ୍କ ଅନବଦ୍ୟ କୃତି ମୂଳରେ ସେହି ପରିର ଆତ୍ମପ୍ରତ୍ୟୟ ବିଦ୍ୟମାନ ।

କିନ୍ତୁ ସ୍ୱାଧୀନତାର ପରବର୍ତ୍ତୀ କାଳରେ ସାହିତ୍ୟ ସାଧକର ଦୃଢ଼ ମନୋବଳ ଚତୁଷ୍ପଦୀ ଜୀବମାନଙ୍କର ଖୁରାଘାତରେ ପୁଣି ଥରେ ଭାଙ୍ଗିରୁଜି ଅଚଳ ହୋଇଯାଇଚି । ସେଇ କାରଣରୁ ପ୍ରାକ୍ ସ୍ୱାଧୀନତା ଯୁଗର ଜଣେ ମହାନ ବ୍ୟକ୍ତିଙ୍କର କାତୀୟ ଅବଦାନର ପୁନରୁଦ୍ଧାରଲାଗି ରାଜ୍ୟ ସାହିତ୍ୟ ଏକାଡେମୀଭଳି ସରକାରୀ ହୃଷ୍ଟପୋଷିତ ସଂସ୍ଥା ସମର୍ଥ ହୋଇ ପାରୁନାହିଁ । ଆଧୁନିକ ଓଡ଼ିଶା ରାଜ୍ୟର ପୁରାତନ ଚିହ୍ନ ପୂଷ୍ଟାର ସ୍ମୃତି ସଂରକ୍ଷଣ ମଧ୍ୟରେ ସଂରକ୍ଷିତ ସୂର୍ଯ୍ୟ ମନ୍ଦିର — କୋଣାର୍କ ଦେଖିବାପାଇଁ ବିଦେଶୀ ପର୍ଯ୍ୟଟକମାନଙ୍କୁ ନିମନ୍ତ୍ରଣ କରାଯାଉଚି । କିନ୍ତୁ ଭାଷା-କୋଣାର୍କରେ ଚିହ୍ନ ପୂଷ୍ଟାର ଆର୍ତ୍ତନାଦ ମଧ୍ୟରେ,— ଏ ଜାତିର ଏକ ସ୍ୱତନ୍ତ୍ର ଭାଷା ଥିଲାବୋଲି ଯେଉଁ ମହାନ ଏକକ ବ୍ୟକ୍ତି ପ୍ରାଣପାତ ଉଦ୍ୟମ କରିଥିଲେ,— ତାଙ୍କରି ଅବିକୃତ ସ୍ମୃତି ସଂରକ୍ଷଣର ବିଶ୍ୱବ୍ୟାପୀ ସ୍ୱୀକୃତି ଧୀରେ ଧୀରେ କିପରି ଅବଲୁପ୍ତ ହୋଇଯାଉଚି, ଏହା କାହାରି ଚେତନାକୁ ସ୍ପର୍ଶ ଆସୁନାହିଁ ।

ପୃଥିବୀରେ ଭାଷା ସାମ୍ରାଜ୍ୟ ସବୁବେଳେ ପରିବର୍ତ୍ତନଶୀଳ । ଫକୀର-ମୋହନ ଏବଂ ବିଶ୍ୱନାଥ କରଙ୍କ ଯୁଗର ଭାଷା ଆଜି ଆଉ କଥିତ ବା ଲିଖିତ ଭାଷା ନୁହେଁ । ପଣ୍ଡିତ ନୀଳକଣ୍ଠ ଦାସ ଯେଉଁ ଭାଷାରେ ସାହିତ୍ୟ ଲେଖୁ-ଥିଲେ ତାହା ଯେତେ ଶୁଦ୍ଧ ଓ ମୌଳିକ ହୋଇଥାଉନା କାହିଁକି, ସେ ଭାଷାକୁ ଆଉରି କେବେ କେହି ଅନୁକରଣ କରିବାର ପ୍ରଶ୍ନ ଉଠୁନାହିଁ । ପଚିଶବର୍ଷ ତଳେ ଓଡ଼ିଆ ଭାଷାରେ ଯେଉଁ ମୌଳିକତା ରକ୍ଷା କରାଯାଇ ପାରିଥିଲା, ତାରି ସ୍ମୃତି ସଂରକ୍ଷଣ ଓ ଓଡ଼ିଆ ଭାଷାର କ୍ରମବିକାଶ ନିର୍ଣ୍ଣୟ କରିବାଲାଗି ଏକ ଐତିହାସିକ

ଦଲିଲ ରୂପେ "ପୂର୍ଣଚନ୍ଦ୍ର ଭାଷାକୋଷ" ଭବିଷ୍ୟତ ବଂଶଧରଂକଲାଗି ନିଶ୍ଚିତ ସାଇତା ହୋଇ ରହିବ । ସେଇ ସମ୍ପଦ ସାଇତାହୋଇ ନରହିଲେ, ଓଡ଼ିଆ ଏକ ସ୍ବତନ୍ତ୍ର ଭାଷ ବୋଲି ଦାବୀ କରିବାର କୌଣସି ଯଥାର୍ଥତା ନାହିଁ ।

ଦୀର୍ଘ ପଚିଶବର୍ଷ ତଳେ ସ୍ୱର୍ଗତଃ ଗୋପାଳଚନ୍ଦ୍ର ପ୍ରହରାଜ ଏହାହିଁ ଅନୁଭବ କରି ଗଭୀର ଅଧ୍ୟବସାୟର ସହିତ ଭାଷାକୋଷ ପ୍ରଣୟନ କରିଥିଲେ । ତାଂକ ପ୍ରଣୀତ ଭାଷା-କୋଷ ଏକ ଶୁଷ୍କ ନୀରସ ବୈୟାକରଣିକ ସଂକଳନ ନୁହେଁ, ଏହା ଏକ ଦୁର୍ଲଭ ଐତିହାସିକ ଗ୍ରଂଥ । ଏହି ଗ୍ରଂଥ ଓଡ଼ିଆ ଜାତିର ସାମାଜିକ, ରାଜନୀତିକ ଏବଂ ଓଡ଼ିଆ ଭାଷା ବିଜ୍ଞାନର ବ୍ୟୁତ୍ପତ୍ତି ସମ୍ପର୍କରେ ଗଭୀର ବିଶ୍ଳେଷଣ କରିଚି । ଇଂରେଜୀ ଭାଷାର ମୌଳିକ ପ୍ରତିଶବ୍ଦଲାଗି ବ୍ୟଥିତ ଆଧୁନିକ ଓଡ଼ିଆ କବି ସାହିତ୍ୟିକଂକର ସୀମିତ ଶବ୍ଦ ଭଂଡାରକୁ ଏହି ଭାଷାକୋଷ ଆହୁରି ଋଦ୍ଧିମଂତ କରିବ । ଓଡ଼ିଶାର ଜାତୀୟ ଜୀବନର ମୌଳିକତା ପ୍ରତିପାଦନ କରିବାପାଇଁ ଯେଉଁ ଭାଷାକୋଷର ସମକକ୍ଷ ଗ୍ରଂଥ ଆଜିଯାଏ ସଂକଳିତ ହୋଇ-ନାହିଁ, ତାର ପୁନଃ ପ୍ରକାଶଲାଗି ରାଜ୍ୟର ସବୁ ସାହିତ୍ୟିକ, ସାଂସ୍କୃତିକ ଅନୁଷ୍ଠାନ, ପାଠାଗାର ତଥା ଶିକ୍ଷାନୁଷ୍ଠାନ ସମବେତ କଂଠରେ ଦାବୀ କରିବା ଉଚିତ ।





## ।। ସାଂସ୍କୃତିକ ନେତୃତ୍ୱ : ନବ-ଆଭିଜାତ୍ୟ ।।

ସାଂସ୍କୃତିକ ତଥା ରାଜନୈତିକ ସ୍ତରରେ ଭାରତୀୟ ତରୁଣର ନେତୃତ୍ୱ ନେବାଲାଗି ପ୍ରବଳ ଆଂତର୍ଜାତିକ ପ୍ରତିଯୋଗିତା ଆରଂଭ ହୋଇଛି ।

ସଂସ୍କୃତି କ୍ଷେତ୍ରରେ ଭାରତର ପୁରାତନ ଐତିହ୍ୟ ଏବଂ ରାଜନୀତି କ୍ଷେତ୍ରରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ ତିନଦଶକର ଘଟଣାବଳୀ,— ଏହାରି ଭିତରେ ଭାରତୀୟ ଯୁବଜନ କେଉଁ ନେତୃତ୍ୱ ଆଡ଼କୁ ଚାଲିବ,— ତାହାହିଁ ବର୍ତ୍ତମାନକାଳର ସବୁଠାରୁ ଉଲ୍ଲେଖଯୋଗ୍ୟ ପ୍ରଶ୍ନ । ଏବଂବିଧ ସମସାମୟିକ ଘଟଣା ପ୍ରବାହମଧ୍ୟରେ ଭାରତୀୟ ·ତରୁଣର ଦୃଷ୍ଟି ସାମନାରେ, ତା'ର ନିଜ ଜନ୍ମଭୂମିର ରଂଗ ମଧ୍ୟ ସ୍ୱାଧୀନୋତ୍ତର ନବ ନିର୍ମାଣ ଛଂଚରେ ବଦଳିଯାଉଛି । ଦେଶର ଚତୁର୍ଦ୍ଦିଗରେ ନୂଆ କୋଠାବାଡ଼ି, ନବୀନ ଉନ୍ନତ ସହର, ବୃହତ୍ତର କଳକାରଖାନା, ନଦୀବଂଧ ଜଳସେଚନ ପ୍ରକଳ୍ପରୁ ଉଦ୍‌ବୃତ୍ତ ଫସଲ ଏବଂ ବିଦ୍ୟୁତ୍ ଆଲୋକରେ ଉଦ୍ଭାସିତ ନବ ବସଂତ, ଏସବୁ କଣ ଭାରତୀୟ ତରୁଣଙ୍କୁ ପୁରାତନ ସଂସ୍କୃତି ବିହ୍ୱଳ କରି ରଖିବାରେ ସାହାଯ୍ୟ କରୁଛି ?

ଭାରତର ପୁରାତନ ସଂସ୍କୃତି କଣ ? ପ୍ରାଗୈତିହାସିକ କାଳର ଘଟଣାବଳୀକୁ ଆଲୋଚନା କଲେ, ଭାରତର ପୁରାତନ ସଂସ୍କୃତି ହେଲା ଆର୍ଯ୍ୟ ଏବଂ ଆର୍ଯ୍ୟେତର ସଂଘର୍ଷର ସଂସ୍କୃତି । ସାମଂତବାଦୀ ସମାଜର ସୁରକ୍ଷାଲାଗି ସେହି ସଂସ୍କୃତିର ଅଭ୍ୟୁଦୟ ହୋଇଥିଲା । ସାମଂତବାଦୀ ବିରୋଧୀ ଶକ୍ତିଗୁଡ଼ିକର ସାମୟିକ ଉତ୍ତେଜନାକୁ ପ୍ରଶମିତ କରିବାପାଇଁ ଯେଉଁ ଉପଦେଶାତ୍ମକ ନୀତିବାକ୍ୟ ତତ୍କାଳୀନ ଶାସ୍ତ୍ର ପୁରାଣରେ ଲିପିବଦ୍ଧ ହୋଇଥିଲା, ତାର ଯଥାର୍ଥତା ସାମଂତ-ବାଦର ବହୁ ପରବର୍ତ୍ତୀ ଶ୍ରେଣୀ ସଚେତନ ଯୁଗରେ କୁଆଡ଼ୁ ସର୍ବମାନ୍ୟ ରହିବ ?

ବିଶ୍ୱ ଇତିହାସରେ ଦୁଇ ଦୁଇଟି ମହାଯୁଦ୍ଧ ଏବଂ ବହୁ ରାଷ୍ଟ୍ର ବିପ୍ଳବର ପରବର୍ତ୍ତୀ ଆଂତର୍ଜାତିକ ଘଟଣାପ୍ରବାହ କ'ଣ ପ୍ରାଗୈତିହାସିକ କାଳର ସାମଂତ-ବାଦୀ ସାମାଜିକ ମୂଲ୍ୟାୟନରେ ପରିବର୍ତ୍ତନ ଆଣିନାହିଁ ? ସେହି କାରଣଲାଗି ସ୍ୱାଧୀନତାର ପରବର୍ତ୍ତୀ ଯୁଗରେ ଭାରତର ଉନ୍ନୟନ ଯୋଜନା ଦ୍ୱାରା ସମାଜର କେତେକ ଶ୍ରେଣୀର ଲୋକଂକ ହାତରେ ଯେଉଁ କ୍ଷମତା ଏବଂ ବୈଭବର ପ୍ରାଚୁର୍ଯ୍ୟ ଠୁଳ ହୋଇଯାଇଛି, ତାକୁ ସାମଂତବାଦୀ ଯୁଗର ସମାଜପରି ସମ୍ମାନ ଦେବା ଉତ୍ତୀର୍ଣ୍ଣ ଦଶକର ତରୁଣପକ୍ଷେ କଦାପି ସମ୍ଭବ ନୁହେଁ । ଆଧୁନିକ କାଳର ବଳିଷ୍ଠ ଆଂତର୍ଜାତିକ ଶ୍ରେଣୀ ଚେତନାର କ୍ରମବର୍ଦ୍ଧମାନ ପ୍ରଭାବ ଭାରତୀୟ ତରୁଣର ପୁରାତନ ଗୁଣ ଚରିତ୍ରକୁ ମଧ୍ୟ ବହୁ ଭାବରେ ପ୍ରଭାବିତ କରିଛି । ଏଇ ପରିବେଶ ମଧ୍ୟରେ ସାଂପ୍ରତିକ ଯୁବ ଜନମାନସରେ ପୁରାତନ ଐତିହ୍ୟର ଆଦର୍ଶଯେ ଅମଳିନ ରହିବ, ଏହା କଦାପି ନୁହେଁ ।

ସ୍ୱାଧୀନୋତ୍ତର ଭାରତର ପଂଚବାର୍ଷିକ ଯୋଜନା ସମୂହରେ ଏଯାବତ୍ ଖର୍ଚ୍ଚ ହୋଇଥିବା ସହସ୍ର ସହସ୍ର କୋଟି ଟଂକା ବିଗତ ଦୁଇଦଶକର ତରୁଣ ସମାଜକୁ କୌଣସି ଦିଗ୍‌ଦର୍ଶନ ଦେଇ ପାରୁନାହିଁ । ଏହା ହୋଇ ନଥିଲେ ଭାରତର ତରୁଣ ତରୁଣୀ ଉଦ୍‌ଭ୍ରାଂତ ହୋଇ ବିହାର ରାଜ୍ୟର ଜଦୁଗୁଡ଼ା ଅରଣ୍ୟ ମଝିରେ ପୁଲିସ ଗୁଳିର ଶୀକାର ହୋଇ ନଥାଂତେ ।

ଗାଁଗହଳର କ୍ରମବର୍ଦ୍ଧିତ ସାଇକେଲ, ସ୍କୁଟର ଏବଂ ରେଡ଼ିଓ ଟ୍ରାଂଜିଷ୍ଟର— ନଦୀବନ୍ଧ ଯୋଜନାର ବହୁମୁଖୀ ଫସଲ କିଂବା ଦେଶର କୋଣକଂଦରେ ବିସ୍ତାରିତ ଶିକ୍ଷାନୁଷ୍ଠାନ; ପଂଚବାର୍ଷିକ ଯୋଜନା ସମୂହର ଗାଣିତିକ ସଙ୍ଖ୍ୟା ନିରୂପଣଲାଗି ସମର୍ଥ ହୋଇପାରଂତି, କିଂତୁ ସେଇସବୁ ଉନ୍ନୟନ ବ୍ୟବସ୍ଥାରେ ଭାରତୀୟ ତରୁଣଲାଗି କି ଦିଗ୍‌ଦର୍ଶନ ନିହିତ ରହିଛି ? ଯୁବଜନମାନଂକ ଉତ୍ତରାଧି-

କାହିଁ ସୂତ୍ରରେ ହାସଲ କରିଥିବା ଅକଳଂତ ବୈଦେଶିକ ଋଣଭାର ଆଜିର ଭାରତୀୟ ଯୁବକ ମନରେ କି ସୃଜନ ସାମର୍ଥ୍ୟର ସ୍ପୃହା ସୃଷ୍ଟି କରିପାରିବ ?

ଭାରତର ଯୁବକ ଆଜି ସହରର ଭିତରେ ଟ୍ରାମ୍ ପୋଡୁଛି, ବସ୍ ଜଳାଇ ଦେଉଛି, ରେଲରାସ୍ତା ଭାଂଗି ଗାଡ଼ିକୁ ଅଚଳ କରିଦେଉଛି — ଏହା ପୁଣି କାହିଁକି ? ଏହାର ଅର୍ଥ ହୋଇପାରେ ଯେ, ସେ ଭାରତରେ ପଂଚବାର୍ଷିକ ଯୋଜନା ଗୁଡ଼ିକର ମହତ୍ତ୍ୱ ବୁଝି ପାରୁନାହିଁ ! କିଂତୁ କାହିଁକି ବୁଝି ପାରୁନାହିଁ ? ଦେଶର ନବ ନିର୍ମାଣରେ ତା’ପାଇଁ ଯଥାର୍ଥ ଦିଗଦର୍ଶନ ନାହିଁବୋଲି ସେ କଣ ତାର ମହତ୍ତ୍ୱ ବୁଝି ପାରୁନାହିଁ ??

ଯେତେବେଳେ ବାଷ୍ପଶକ୍ତି ସାହାଯ୍ୟରେ ବିଲାତ ଦେଶରେ ଲୁହାକଳ ଚାଲିଲା, ସେତେବେଳେ ତାଂତିମାନେ ବିଦ୍ରୋହ କରି କଳ ଗୁଡ଼ିକ ଅଚଳ କରିଦେଲେ । ଏହାର କାରଣ ହେଉଛି ଶକ୍ତିଚାଳିତ ତାଂତର ଉଦ୍ଭାବନ ପରେ ହସ୍ତତାଂତ ଚାଳକମାନେ ବୁଭୁକ୍ଷୁ ରହିଯିବାର ଆଶଂକା ଦେଖାଦେଲା । ପରେ କିଂତୁ ସେମାନେ ଜାତୀୟ ସ୍ୱାର୍ଥଦୃଷ୍ଟିରୁ କଳତାଂତର ଆବଶ୍ୟକତାକୁ ସ୍ୱୀକାର କରିନେଲେ । ଭାରତର ଗାଁଗହଳର ଲୋକମାନେ ପ୍ରଥମେ କଳପାଣି ଏବଂ ଗୋବୀଜ ଟିକାର ବ୍ୟବହାରକୁ ବିରୋଧ କରୁଥିଲେ । କିଂତୁ ପରେ ସେମାନେ ଉଭୟର ଉପକାରିତାରେ ଅଭିଭୂତ ହୋଇଗଲେ । ଉତ୍ତୀର୍ଣ୍ଣ ଦଶକରେ ଦେଶର ଯେଉଁ ତରୁଣ ଟ୍ରାମ ପୋଡୁଛଂତି ଏବଂ ରେଲଗାଡ଼ିର ପାହିଆ ଉପାଡ଼ି ଫିଂଗୁଛଂତି, ସେମାନେ ଠିକ ସେଇଆ ନୁହଂତି ! ରେଲଗାଡ଼ିର ଆବଶ୍ୟକତା ନବୁଝିପାରି ସେମାନେ ତାକୁ ଅଚଳ କରି ଦେଉନାହାଂତି । ସେଇହେତୁ ସେମାନଂକୁ ସଂସ୍କୃତିର ଦୁହାଇଦେଇ ସଂଯତ କରିବାର ପ୍ରଶ୍ନ ଉଠିନପାରେ । ଯେଉଁଠି ପ୍ରଗତିପାଇଁ ବ୍ୟାକୁଳ ବିଦ୍ରୋହୀ ତରୁଣର ନିର୍ମମହସ୍ତ କ୍ଷୀଣପ୍ରମତ୍ତ ଏବଂ ଅସାମଂଜସ୍ୟ ପ୍ରଗତିର କଂଠରୋଧ କରିବାକୁ ବଦ୍ଧପରିକର, ସେଠି ଅନାଦି ସାଂସ୍କୃତିକ ନେତୃତ୍ୱର ପ୍ରଶ୍ନ ଉଠାଇବା ମଧ୍ୟ ନିରର୍ଥକ । ସେଇ କାରଣରୁ ଚଳିତ ଦଶକର ଭାରତୀୟ ତରୁଣ ପାଖରେ ସାଂସ୍କୃତିକ ନେତୃତ୍ୱର ଆକର୍ଷଣ କାର୍ଯ୍ୟତଃ ବିଫଳ ହୋଇଯାଇଛି ।

ଏହା ପରେ ରାଜନୀତିକ ନେତୃତ୍ୱର କଥା ବିଚାରକୁ ଆଣିବା । ଭାରତୀୟ ରାଜନୀତିକୁ ଆଜି ଗୁଣାତ୍ମକ ଦୃଷ୍ଟିରୁ ବିଚାର କରିବାର ପ୍ରଶ୍ନ ଉଠେନାହିଁ । ମୋଟାମୋଟିଭାବେ ଦେଖିଲେ ବର୍ତ୍ତମାନର ରାଜନୀତି ଏକଚାଟିଆ ମୁନାଫା-ଖୋରଂକ ରାଜନୀତି । ଯେଉଁମାନେ ନିଜ ଯୌବନର ପ୍ରାକ୍‌କାଳରେ ସ୍ୱାଧୀନତା

ଆନ୍ଦୋଳନପାଇଁ ତ୍ୟାଗର ଦାବନ ଦେଇପାରି ଥିଲେ, ସେମାନେ ଉନ୍ନତଶକ୍ତିଧର ତାହା ସୁଧ ମୂଳ ସହିତ ଆଦାୟ କରିବାରେ ବ୍ୟସ୍ତ । ଅନୁନ୍ନତ ଦେଶର ରାଜନୀତି କ୍ଷେତ୍ରରେ ସେଭଳି ପୁଂଜି ଲଗାଣକାରୀ ସୁଧଖୋର ମହାଜନମାନେ ଆଉ ନୂଆ ଲୋକଂକଲାଗି ଅକସ୍ମାତ୍ କ୍ଷେତ୍ର ଛାଡ଼ିଦେବା ସମ୍ଭବପର ନୁହେଁ । ବ୍ୟୟବହୁଳ ପାର୍ଲିଆମେଂଟାରୀ ନିର୍ବାଚନ ପଦ୍ଧତିରେ, ପ୍ରତିଭାବାନ ଦେଶପ୍ରେମୀ ଯୁବକ, କିଂବା ବିଭବଶୂନ୍ୟ ବୁଦ୍ଧିଜୀବୀ ବ୍ୟକ୍ତିର ଅପାପବିଦ୍ଧ ଆତ୍ମା; ବିଚରଣ କରିବାର ସୁଯୋଗ ପାଏନାହିଁ ।

ଅଂତଃସାରଶୂନ୍ୟ ପାର୍ଲିଆମେଂଟାରୀ ରାଜନୀତିରେ ଅର୍ଥବଳ ଏବଂ ଦଳର ଶକ୍ତି ପ୍ରଧାନ । ସେଥିରେ କୌଣସି ଆଦର୍ଶବାଦ ଏବଂ ରାଜନୀତିକ ସାଧୁତା ଅତିମାତ୍ରାରେ ଗୌଣବସ୍ତୁ । ଗୋଟିଏ ପ୍ରକାର ଲକ୍ଷ୍ୟସାଧନଲାଗି ବହୁ ନୀତିବିରୋଧୀ ଏବଂ ଉଦ୍ଦେଶ୍ୟ ବିରୋଧୀ ବ୍ୟକ୍ତିଂକ ସମାବେଶକୁହିଁ ଦଳ କୁହାଯାଏ । ସେହି ଦଳର ପରିପୁଷ୍ଟିଲାଗି ଅର୍ଥ କିଂବା ଶକ୍ତି ସଂଗ୍ରହ କଲାବେଳେ, ସାଧାରଣ ମଣିଷର ବିବେକବୁଦ୍ଧିକୁ ମଧ୍ୟ ଜଳାଂଜଳି ଦିଆଯାଏ ।

ଭାରତର ରାଜନୀତିକ ସାଧୁମାନେ ଉତ୍ତର, ପୂର୍ବ, ଦକ୍ଷିଣ, ପଶ୍ଚିମ, ବାମ ମଧ୍ୟମ, ଉତ୍ତମ, ଅଧମ ଆଦି ବହୁ ଶାଖା ପ୍ରବରରେ ବିଭକ୍ତ ହେଲେ ମଧ୍ୟ ପାର୍ଲିଆମେଂଟାରୀ ଶାସନକ୍ଷେତ୍ରର କ୍ରିୟାକଳାପ ଦୃଷ୍ଟିରୁ କେହି କାହାଠାରୁ ପୃଥକ ପ୍ରମାଣିତ ହୋଇପାରିଲେ ନାହିଁ !

୧୯୭୨ ସାଧାରଣ ନିର୍ବାଚନ ବେଳକୁ ଦେଶର ବହୁ ତରୁଣ ତରୁଣୀ ସାବାଳକ ହୋଇଗଲେ ପାର୍ଲିଆମେଂଟାରୀ ଶାସନ ସଂସଦ ଗୁଡ଼ିକର ରୂପ ବଦଳି ଯିବ ବୋଲି ଅନେକ ରାଜନୈତିକ ପଂଡିତ ଭବିଷ୍ୟତବାଣୀ କରିଥିଲେ । ନିର୍ବାଚନ ସଂକ୍ରାଂତରେ ସରକାରୀ ଦପ୍ତରରୁ ପ୍ରକାଶିତ ଅଗ୍ରୀମ ତଥ୍ୟାବଳୀରେ ମଧ୍ୟ ଏଇପ୍ରକାର ସୂଚନା ଦିଆଯାଇ ଥିଲା । କିଂତୁ ଜଳର ଉତ୍ତାପ ୩୨ ଡିଗ୍ରୀ ଫରେନହିଟରେ ପହଂଚଗଲେ ଯେପରି ଆପେଆପେ ବରଫ ହୋଇଯାଏ, ସେଇପରି ଦେଶରେ ସାବାଳକଂକ ସଂଖ୍ୟାବୃଦ୍ଧି ଦ୍ୱାରା ପାର୍ଲିଆମେଂଟାରୀ ଶାସନ ସଂସ୍ଥାର ଘଟଣା ପରିବର୍ତ୍ତନ ସମ୍ଭବ ନୁହେଁ । ଭାରତଭଳି ବିରାଟ ଉପମହାଦେଶରେ ଏମୁଂଡରୁ ସେମୁଂଡଯାଏ ବର୍ଷକୁ ଲକ୍ଷଲକ୍ଷ ତରୁଣ ସେନା ସାବାଳକ ହେଉଛଂତି । ସେମାନେ ନିର୍ବାଚନ ରାଜନୀତିରେ ଉତ୍ତୀର୍ଣ୍ଣ ହେବାପାଇଁ ସୁଯୋଗ ନପାଇଲେ ବି ସରକାରୀ ଅଫିସ ଦପ୍ତର ଆଦି ସବୁଗୁଡ଼ିକ ପ୍ରଶାସନିକ ସଂସ୍ଥା ସେମାନଂକର

ଅକୁଣ୍ଠ ପଦଧ୍ୱନିରେ ମୁଖରିତ ହୋଇଯାଇଛି । କିନ୍ତୁ ଏହାଦ୍ୱାରା ଏ ଦେଶର ପ୍ରଶାସନିକ ଧାରା ପ୍ରବାହରେ କୌଣସି ଗୁଣାତ୍ମକ ପରିବର୍ତ୍ତନର ସୂଚନା ମିଳୁଛି କି ?

ପ୍ରଶାସନିକ ଅଫିସ ଦପ୍ତରରେ ଅବିସ୍ମରଣୀୟ ଦୁର୍ନୀତି, ଅପବ୍ୟୟ, ଅବହେଳା ଏବଂ ନିଷ୍ଠୁର ଦେଶବାସୀଙ୍କର ଆଶା ଆକାଂକ୍ଷା ପ୍ରତି ଉଦାସୀନତା ବଢିଚାଲିଛି । ଯେଉଁ ନିର୍ମଳ ଚରିତ୍ର ଯୁବକମାନେ ଶିକ୍ଷାଯତନର ପରିସର ମଧ୍ୟରେ ଦେଶରୁ ଦୁର୍ନୀତିମୂଳକ କ୍ରିୟାକଳାପ ବିରୁଦ୍ଧରେ ବଜ୍ରମୁଷ୍ଟି ଉତ୍ତୋଳନ କରନ୍ତି, ସେମାନେ ନିଜେ ପ୍ରଶାସନିକ କ୍ଷେତ୍ରରେ ପ୍ରବେଶକରି ଶାସନ ସଂସ୍ଥାର କୌଣସି ଗୁଣାତ୍ମକ ପରିବର୍ତ୍ତନର ସୂଚନା ଦେଇପାରନ୍ତି ନା ନାହିଁ ? ପ୍ରଶାସନିକ କ୍ଷେତ୍ରରେ ଯଦି ସେମାନଙ୍କର ଆଦର୍ଶ ବିଫଳ ହୋଇଯାଏ, ରାଜନୀତି କ୍ଷେତ୍ରରେ ସେମାନଙ୍କଠାରୁ କି ନୂଆ ଦିଗ୍‌ଦର୍ଶନ ଆଶା କରାଯାଇ ପାରିବ ?

ଯେଉଁ ଦେଶର ପ୍ରଶାସନ ଏବଂ ରାଜନୀତି ଉଭୟ ସଂସ୍ଥା ପରସ୍ପରର ପରିପୂରକ କଳୁଷିତ ଅନୁଷ୍ଠାନରେ ପର୍ଯ୍ୟବସିତ, ସେ ଦେଶରେ ଜାତୀୟ ଚରିତ୍ରର ମାନଦଣ୍ଡ ମଧ୍ୟ ଦୁର୍ବଳ ଏବଂ ଦୋଦୁଲ୍ୟମାନ । ଏପରି ଦୋଦୁଲ୍ୟମାନ ଜାତୀୟ ଚରିତ୍ର ମଧ୍ୟରେ ଦେଶର ନବଯୁବକ ପାଖରୁ କୌଣସି ଗୁଣାତ୍ମକ ପରିବର୍ତ୍ତନ ବା ନିର୍ଦ୍ଦୋଷ ସୃଜନଶୀଳତା ଆଶା କରିବା ନିରର୍ଥକ । ଯେଉଁମାନେ ଏ ଦେଶରେ ପୁରାତନ ସାଂସ୍କୃତିକ ଐତିହ୍ୟର ପ୍ରବକ୍ତା, ସେମାନେ ପୁଣି ଏହାର କି ସମାଧାନ କରନ୍ତି ?

ଘଟଣାଚକ୍ରର ବିଚିତ୍ର ବିଡ଼ମ୍ବନା ହେତୁ ଆଜି ଏ ଦେଶରେ ସଂସ୍କୃତି ଏବଂ ଐତିହ୍ୟ ପ୍ରତି ଦେଶବାସୀଙ୍କ ମନରେ ଆକର୍ଷଣ ସୃଷ୍ଟି କରିବାଲାଗି ମଧ୍ୟ ବିଦେଶୀ ଅର୍ଥର ଆବଶ୍ୟକ । ଏ ଦେଶରେ ଯୁବ ଶକ୍ତିକୁ ବସୁଧୈବତାରୁ ଦୂରରେ ରଖିବାହିଁ ଆଜିକାର ରାଜନୈତିକ ସଂସ୍କୃତି ! ସେଥିଲାଗି ଜାଜ ମିଉଜିକ୍, ଟ୍ୱିଷ୍ଟ ଡ଼ାନ୍ସ, ଉତ୍ତେଜକ ଚଳଚ୍ଚିତ୍ର ସିନେମା ଛବି, ବାସନା ଉଦ୍ଦୀପକ ସାହିତ୍ୟ, ବିଳାସ ଉପ-ଯୋଗୀ କସମେଟିକ୍ ଓ କଂଜ୍ୟୁମର୍ସ ଗୁଡ଼ସ୍‌ର ବଜାର ଏବଂ ବିଭିନ୍ନ ଟ୍ରାନ୍ସ-ପେରେଣ୍ଟ ପୋଷାକପତ୍ରର ଆଗ୍ରହ ସୃଷ୍ଟି ହେଉଛି । ଭବନ କର୍ଣ୍ଣାଳଠାରୁ ଶର୍ତ୍ତର୍ସ ଡ଼ାଇକେଷ୍ଟପାଏ ଏବଂ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କଠାରୁ ଛୁପା ପୋଷାକ ତିଆରି କରୁଥିବା ଦରଜୀପର୍ଯ୍ୟନ୍ତ— ଭାରତୀୟ ଯୁବକର ଦୈହିକ ଏବଂ ମାନସିକ ସ୍ୱାସ୍ଥ୍ୟ ରକ୍ଷା କରିବାପାଇଁ ଗଳଦ୍‌ଘର୍ମ ହୋଇଯାଉଛନ୍ତି । ଦେଶର ଛୋଟବଡ଼ ପ୍ରତ୍ୟେକ ସହରରେ ଶିକ୍ଷିତ ଯୁବକ ଓ ତରୁଣ ପ୍ରଶାସନିକ ଅଫିସରମାନଙ୍କ

ମଧ୍ୟରେ ନୂଆ ସମ୍ଭ୍ରମଶୀଳ ଶ୍ରେଣୀ ସୃଷ୍ଟି କରିବାଲାଗି ହୋଟେଲ ଏବଂ ଲାଇନ୍ସ କ୍ଲବ ଆଦି ଆନ୍ତର୍ଜାତିକ ସଂସ୍ଥାର ଶାଖା ଖୋଲାଯାଉଛି । ଏ ଦେଶରେ ନବୋଦିତ ପୁଞ୍ଜିବାଦୀ ସମ୍ପ୍ରଦାୟର ନିର୍ଭରଶୀଳ ଗୋଟାଏ ଶ୍ରେଣୀ ସୃଷ୍ଟି କରିବାପାଇଁ କପଟାଚାରୀ ସଂସ୍କୃତି ନେତା ଓ ତାଙ୍କର ଆନ୍ତର୍ଜାତିକ ସମର୍ଥକ ଶକ୍ତିମାନେ ସୁଚତୁର ଉଦ୍ୟମରେ ଲାଗିପଡ଼ିଛନ୍ତି । ଏହାଫଳରେ ସେମାନେ ଭାରତୀୟ ଯୁବସମ୍ପ୍ରଦାୟକୁ ଏପରି ଛାଞ୍ଚରେ ଗଢ଼ି ତୋଳିବେ ଯେ, ସେମାନେ ଧ୍ୟାନଧାରଣାରେ ପୁଞ୍ଜିବାଦ ବିରୋଧୀ ହେଲେ ମଧ୍ୟ ଆଚରଣ କ୍ଷେତ୍ରରେ ପୁଞ୍ଜିବାଦର ବିନା ସାହାଯ୍ୟରେ ଜୀବନରେ ପାହୁଣ୍ଡେ ମାତ୍ର ଅଗ୍ରସର ହୋଇପାରିବେ ନାହିଁ । ଏଇ ନବ ଆଭିଜାତ୍ୟ ସମ୍ପନ୍ନ ଯୁବଗୋଷ୍ଠୀଙ୍କୁ କ୍ଲାନ୍ତରେ ଛୁଙ୍କିଲାଗିଲେ ସେମାନେ ଭିକ୍ସ ଶୁଙ୍ଘିବେ, ଆମୋଦପ୍ରମୋଦବେଳେ ସେମାନଙ୍କଲାଗି ପୁଞ୍ଜିପତିଙ୍କ ବ୍ରୁଏରୀ ଖୋଲିଯିବ, ଦାନ୍ତଘଷିବାବେଳେ ସେମାନେ ପୋଲିଓ ଭେକ୍ସିନ, ନିରୋଧ ମୁଣା ଏବଂ ଆମେରିକାରୁ ଆମଦାନୀ ଗୁଣ୍ଡଦୁଧ ବାଣ୍ଟିବେ । ଭାରତରେ ସଂସ୍କୃତି ଏବଂ ସମାଜ ସେବା କ୍ଷେତ୍ରରେ ଆଜି ଯେଉଁ ନୂଆ ଆନ୍ତର୍ଜାତିକ ଆଭିଜାତ୍ୟର ସଂକ୍ରମଣ ସୃଷ୍ଟି ହୋଇଛି, ତାହା ଏ ଦେଶର ପ୍ରଶାସନିକ ଏବଂ ରାଜନୈତିକ ସ୍ତରକୁ କେଉଁ ପରିମାଣରେ କଳଙ୍କିତ କଲାଣି, ଆମର ସଂସ୍କୃତିପ୍ରବର ମହାପୁରୁଷଗଣ ତାର ହିସାବ ରଖିଛନ୍ତିକି ?

ରାଜନୀତି କହ, ସଂସ୍କୃତି କହ — ଭାରତୀୟ ତରୁଣ ଆଜି ଦୋଛକି ରାସ୍ତାରେ ଠିଆ ହୋଇଛି । ସାଂପ୍ରତିକ ଭାରତରେ ରାଜନୀତି,— ଆନ୍ତର୍ଜାତିକ କ୍ଷେତ୍ରରେ କମ୍ୟୁନିଜିମ୍ ଏବଂ କମ୍ୟୁନିଜିମ୍ ବିରୋଧୀ ଶକ୍ତି ଗୁଡ଼ିକର ସଂଘାତର ରାଜନୀତି । ଭାରତର ସଂସ୍କୃତି ଏବଂ ରାଜନୀତି ଉଭୟରେ ନେତୃତ୍ୱର ଆସନ ଆଜି ସମାନରୂପେ ଟଳମଳ । ଭାରତୀୟ ତରୁଣର ବ୍ୟକ୍ତିଗତ ବା ସାମାଜିକ ସ୍ତରରେ ସୃଜନାତ୍ମକ ବିକାଶଲାଗି କ୍ଷମତା ଏବଂ ଅର୍ଥ ଉଭୟ ଆବଶ୍ୟକ । ଇତିହାସର କୌଣସି ଶୂନ୍ୟ ଭୂମିରୁ ଯେଉଁ ଆବଶ୍ୟକତା ପୂରଣ ହେବାର ପ୍ରଶ୍ନ ଉଠେନାହିଁ । ଭାରତୀୟ ଯୁବକ ଆଗରେ ବର୍ତ୍ତମାନ ସେ ଟିଏ ମାତ୍ର ପ୍ରଶ୍ନ — ସେ ଆନ୍ତର୍ଜାତିକ ଶକ୍ତି ସଂଘାତ ଭିତରେ ଦୁର୍ବଳଭାବେ ଆତ୍ମସମର୍ପଣ କରି ତଥାକଥିତ ଶତ୍ରୁ ବା ତଥାକଥିତ ମିତ୍ର ଶକ୍ତିମାନଙ୍କର ସେଟେଲାଇଟ (ଉପଗ୍ରହ) ହୋଇଯିବ କି ?



## ॥ ଭାରତୀୟ ଯୁବ ଆନ୍ଦୋଳନ ॥

ଭାରତରେ ଆଧୁନିକ ଯୁବ-ଜାଗରଣର କୌଣସି ଐତିହାସିକ ଏବଂ ଶାସ୍ତ୍ରୀୟ ଭିତ୍ତିଭୂମି ପରିଷ୍କୁଟ ହୋଇ ପାରିନାହିଁ ବୋଲି, ଏହି ଜାଗରଣକୁ ଉପେକ୍ଷା କରାଯାଇ ନପାରେ । ଏ ଦେଶରେ ଆଜିପର୍ଯ୍ୟନ୍ତ ଯେଉଁ ଭାବରେ ଜନ ଜାଗରଣ ଆରମ୍ଭ ହୋଇ ଯେଉଁ ଲକ୍ଷ୍ୟସାଧନ ଦିଗରେ ନିୟୋଜିତ ହୋଇଥିଲା, ସାମ୍ପ୍ରତିକ ବାତାବରଣ ଠିକ୍ ସେହିଭଳି ନୁହେଁ । ସେହି କାରଣରୁ ଆଧୁନିକ ଯୁବ ଜାଗରଣକୁ ନୂତନ, ଅତ୍ୟାଧୁନିକ କିମ୍ବା ଅର୍ବାଚୀନ କୁହାଯାଇ ପାରେ, କିନ୍ତୁ ଏହା କଦାପି ଅପ୍ରତ୍ୟାଶିତ ବା ଅବାଞ୍ଛିତ ନୁହେଁ ।

ଭାରତରେ ପୁରାତନ ସାମାଜିକ ବଦ୍ଧ ବ୍ୟବସ୍ଥାରେ ଯୁବ ଉତ୍ତେଜନାକୁ ଉତ୍ସାହିତ କରାଯାଇନାହିଁ । ଶୃଙ୍ଖଳାଧର୍ମୀ ସାମନ୍ତବାଦୀ ଚେତନା ଏ ଦେଶର ଆଧ୍ୟାତ୍ମିକ ଆଚରଣ ଭିତରେ ପ୍ରତିଫଳିତ ହୋଇଛି । ସମାଜର ଅନୁସୃତ

ଆଚରଣ ବିଧି, ପୋଷାକ ପରିଚ୍ଛଦ, ଆହାରବିହାରରେ ବ୍ୟକ୍ତିଜନାଙ୍କୁ ପ୍ରଶମିତ କରିବା ପାଇଁ ସଂଯମ ଓ ତ୍ୟାଗର ବିଧିବିଧାନ ଖଂଜାଯାଇଛି । ଐତିହାସିକ ଭିତ୍ତିଭୂମି ବା ପାରଂପରିକ ବିଚାରଧାରା ମାଧ୍ୟମରେ ସାଂପ୍ରତିକ ଆଂଦୋଳନକୁ ସେଇ କାରଣରୁ କୌଣସି ଦିଗଦର୍ଶନ ମିଳି ପାରୁନାହିଁ ।

ବୈଜ୍ଞାନିକ ଦୃଷ୍ଟିକୋଣରୁ ପରୀକ୍ଷା କଲେ ଆଧୁନିକ ଯୁବ ଜାଗରଣର ଆଉ ଗୋଟିଏ ଦୁର୍ବଳତା ସ୍ପଷ୍ଟ ହେଲ, ଏହା ଏପର୍ଯ୍ୟଂନ୍ତ କୌଣସି ଜାତୀୟ ଭିତ୍ତିଭୂମିରେ ସୁପ୍ରତିଷ୍ଠିତ ନୁହେଁ । କୌଣସି କୌଣସି କ୍ଷେତ୍ରରେ ଏହା ଆଂତ-ର୍ଜାତିକ ଚେତନାର ବାହକ ହେଲେ ମଧ୍ୟ ସେହି ଚେତନାକୁ ଭାରତୀୟ ତରୁଣର ପ୍ରଚଳିତ ଚିନ୍ତା ଚରିତ୍ର ମାଧ୍ୟମରେ ମହତ୍ତ୍ୱପୂର୍ଣ୍ଣଭାବେ ପରିସ୍ଫୁଟ କରିବା ସମ୍ଭବପର ହୋଇ ପାରିନାହିଁ । ଆଧୁନିକ ଭାରତର ଯୁବ ଆଂଦୋଳନ, ଅଧିକାଂଶ କ୍ଷେତ୍ରରେ ଆଂଚଳିକ ବା ସ୍ଥାନୀୟ ପରିବେଶ କିଂବା ନିଜସ୍ୱ ବିଚାର ସୀମାରେ ସଙ୍କୁଚିତ । ଏ ଦେଶରେ ତାମିଲନାଡୁ ଏମ. ଜି ଆର୍. ଗୋଷ୍ଠୀ ଯୁବ ଆଂଦୋଳନ ଯେଉଁପରି ଆଂଚଳିକ ସୀମାନା ଭିତରେ ସଙ୍କୁଚିତ ଥିଲା, ପଶ୍ଚିମବଂଗର ସନ୍ତ୍ରାସବାଦୀ ଯୁବଗୋଷ୍ଠୀର ଆଂତର୍ଜାତିକପଂଥୀ ନକ୍ସଲବାଦୀ ଆଂଦୋଳନ ତା'ଠାରୁ ଭିନ୍ନ ମାର୍ଗରେ ଗତି କଲେ ମଧ୍ୟ ସେଇ ଆଂଦୋଳନର ଭିତ୍ତିପ୍ରସ୍ତର ତଳେ ଯୁବ ଚେତନାକୁ ଜାତୀୟ ବା ଆନ୍ତର୍ଜାତିକ ସ୍ତରରେ ନୂଆ ଦିଗ୍‌ଦର୍ଶନ ଦେଇଥିଲା କି ନିର୍ଦ୍ଦେଶ ରହିଛି ?

କଲିକତାର ଫୁଟ୍‌ପାଥ୍‌ରେ ସନ୍ତ୍ରାସବାଦୀ ଯୁବ ଦଳର ଜୟଯାତ୍ରା ଚାଲି-ଥିଲାବେଳେ ସର୍ଓ୍ୟାଡ଼୍‌ବ୍ଲକର ପ୍ରବୀଣ ନୈଧାନିକ ହେମଂତ ବସୁଂକ ଗ୍ରୀବାରେ ଯେଉଁ କାରଣରୁ ଛୁରୀ ଭୂଷା ଯାଇଥିଲା, ସେଇ କାରଣରୁ ଦେଶବଂଧୁ ଚିତ୍ତରଂଜନ ଦାସ ବା ଈଶ୍ୱରଚଂଦ୍ର ବିଦ୍ୟାସାଗରଂକ ପ୍ରତିମୂର୍ତ୍ତିଦେହରୁ ମସ୍ତକ କାଟି ଅଲଗା କରି ଦିଆଗଲା । ସେଇ ବିଦ୍ୱେଷୀ ବା ବିସ୍ଫୋରଣରେ କୌଣସି ସର୍ବଭାରତୀୟ ଜାତୀୟ ଆଂଦୋଳନର ବୀଜ ନିହିତ ଥିଲାକି ନାହିଁ ଏହା ହେଉଛି ଅସଲ ପ୍ରଶ୍ନ । ହେମଂତ ବସୁଂକ ବୁକୁରେ ଛୁରୀକାଘାତ ମୂଳରେ ବା ଦେଶବଂଧୁ ଚିତ୍ତରଂଜନ ଏବଂ ଈଶ୍ୱରଚଂଦ୍ର ବିଦ୍ୟାସାଗରଂକ ପ୍ରତିମୂର୍ତ୍ତିକୁ ବିକ୍ଷତ ବିକଳାଂଗ ଓ ବିଦ୍ରୂପିତ କରିବା ମୂଳରେ ଯଦି କୌଣସି ଜାତୀୟ ଆଂଦୋଳନର ଭିତ୍ତି ପତନ ସମ୍ଭବପର ହୋଇଥାଂତା, ତାହାହେଲେ ସେଇ ଗୋଟିଏ ଦୁଇଟି ଘଟଣାରେ ଆଧୁନିକ ଯୁବ ଆଂଦୋଳନର ଇତିହାସ ପୃଥିବୀ ବକ୍ଷରେ ମହତ୍ତ୍ୱପୂର୍ଣ୍ଣ ହୋଇ ପାରଂତା ।

କଂଗ୍ରେ ସେଇ ଉଦ୍ଦେଶ୍ୟ ସାଧିତ ନହେବାରୁ ସଙ୍ଘାସବାଦୀ ଯୁବ ଆଂଦୋଳନ ମଧ୍ୟରେ ଅଂତର୍ବିରୋଧୀ (Inner Contradictions) ପ୍ରବଳତର ହୋଇ ଶେଷରେ ତାର ମୂଳଭିତ୍ତି ଭୂଷୁଡ଼ି ପଡ଼ିଲା । ପୁରାତନ ସମାଜ ବ୍ୟବସ୍ଥାର ପରିପ୍ରେକ୍ଷୀରେ ପରିବର୍ତ୍ତନ ଆକାଂକ୍ଷୀ ଭାରତୀୟ ଯୁବ ଆଂଦୋଳନକୁ ଏଠାରେ ଯେଉଁ ଧକ୍କା ଲାଗିଲା, ତା'ର ଆଘାତ ଇତିହାସର ବୁକୁରେ ଦୀର୍ଘସ୍ଥାୟୀ ହୋଇଯିବ । ଏଠାରେ ହିଂସା ଓ ଅହିଂସାର ସଫଳତା, ବିଫଳତାର ପ୍ରଶ୍ନ ଉଠୁନାହିଁ । ବିଫଳତା ଯେଉଁ କାରଣରୁ ଆସିଥାଉନା କାହିଁକି, ଭାରତୀୟ ଯୁବ ଆଂଦୋଳନର ଧାରା ପ୍ରବାହରେ ଯେଉଁ ଐତିହାସିକ ବିସ୍ମରଣତ ତ୍ରୁଟି ରହିଗଲା, ତାହା ନିର୍ଣ୍ଣୟ କରିବା ସବୁଠାରୁ ବଡ଼ କଥା ।

ଅନ୍ୟ ଦୃଷ୍ଟିରୁ ଦେଖିଲେ ଏ ଦେଶରେ ସାମନ୍ତବାଦୀ ଧର୍ମ ଭିତ୍ତିକ ଆଚରଣ-ସର୍ବସ୍ୱ ସମାଜରେ ଆଜିଯାଏ ଯୁବଶକ୍ତିର ଅନଳ ପରୀକ୍ଷାଲାଗି ଥରେ ମାତ୍ର ସୁଯୋଗ ଆସିଥିଲା । ସେ ପରୀକ୍ଷା ହେଉଛି ସ୍ୱାଧୀନତା ଆଂଦୋଳନ । ସେ ଅବଧିର ଚୂଳିମାଲି ପରେ ଆକୁମାରୀ ହିମାଚଳ ଯୁବ ଚେତକୁ ଗୋଟିଏ ଆହ୍ୱାନରେ ଆଲୋଡ଼ିତ କଲାଭଳି ଅନ୍ୟ କୌଣସି ଉଦ୍ୟମ ହୋଇନାହିଁ । ଯୁବ ଶକ୍ତିକୁ ଖଂଡିତ, ବିକଳାଂଗ ଏବଂ ବିପର୍ଯ୍ୟସ୍ତ କରି ଯେଉଁଠି ଯାହାସବୁ ଆଂଦୋଳନ ହୋଇଛି; ସେସବୁ ଇତିହାସର ଧାରା ପ୍ରବାହରେ ନିରର୍ଥକ । ଭାରତୀୟ ଯୁବ ଜାଗରଣ କ୍ଷେତ୍ରରେ ସ୍ୱାଧୀନୋତ୍ତର ଯୁବର ନେତୃତ୍ୱହୀନ ଦାୟିତ୍ୱହୀନ ରୂପକୁ ଭବିଷ୍ୟତର ଟୀକାକାର କଦାପି କ୍ଷମା କରିପାରିବେ ନାହିଁ ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଶିଳ୍ପ ବିପ୍ଳବ ପରେ ପଶ୍ଚିମ ମହାଦେଶରେ ତାରୁଣ୍ୟ ପ୍ରତିଭାର ବିନିଯୋଗ ବଳରେ ଯଂତ୍ର ଦାନବ ଯେଉଁ ଚ୍ୟାଲେଂଜ ସୃଷ୍ଟି କଲା, ମଣିଷ ଜାତି ସେଥିରେ ଚିର ଯୌବନ ଲାଭ ନକରି ରହିପାରିଲା ନାହିଁ । ପଶ୍ଚିମ ମହାଦେଶରେ ସଂଘଟିତ ଉପର୍ଯ୍ୟୁପରି ଦୁଇଟି ମହାଯୁଦ୍ଧରେ ସଂହାରର ଧ୍ୱଂସସ୍ତୁପ ଭିତରୁବି ମଣିଷର ସୃଜନୀ ପ୍ରତିଭା ଚମତ୍କାର କରି ଉଠିଥିଲା । ଊନବିଂଶ ଶତାବ୍ଦୀର ଶିଳ୍ପ ବିପ୍ଳବ ପରିଣତ ଅବସ୍ଥାରେ ଯେଉଁ ବିଶ୍ୱ-ବ୍ୟାପୀ ମହାଯୁଦ୍ଧକୁ ନିମନ୍ତ୍ରଣ କରି ଆଣିଥିଲା, ସେଇ ଅନାହତ ଶିଳ୍ପ ବିପ୍ଳବ ମଣିଷ ହାତରେ ଦେଇଥିଲା ସଂହାରର ଧ୍ୱଂସସ୍ତୁପ ମଧ୍ୟରୁ ମଧ୍ୟ ନିଜକୁ ରକ୍ଷାକରିବା ଶକ୍ତି ! ସେଇ ସଞ୍ଜୀବନୀ ଶକ୍ତି ବଳରେ କେବଳ ଯୁଦ୍ଧବିଧ୍ୱଂସ୍ତ ପଶ୍ଚିମ ମହାଦେଶ ନୁହେଁ, ଭାରତର ନିକଟତମ ପ୍ରତିବେଶୀ ଜାପାନ, ଚିନ୍, ଇଂଦୋନେସିଆ, ଇଂଦୋଚିନ୍ ଆଦି ରାଜ୍ୟରେ ଏପରିକି ପୁଂଜିବାଦୀ ଆମେରିକା ଦେଶର କୁକ୍ଷିଗତ ଫରମୋଜା ଦ୍ୱୀପରେ ମଧ୍ୟ ଆତ୍ମ ନିର୍ଭରଶୀଳ ଯୁବଶକ୍ତି ଜନ୍ମଲାଭ କରିଛି ।

କିଂତୁ ଭାରତରେ ତାହା ହେଲନାହିଁ । ଭାରତର ଯୁବଶକ୍ତିର ଅପରିମିତ ସୃଜନକାରୀ ଶକ୍ତିର ସଦ୍‌ବ୍ୟବହାର କରି ନଯାଇ ତାକୁ ଅଥର୍ବ, ଅକର୍ମଣ୍ୟ, ପଂଗୁ ଏବଂ ପରମୁଖାପେକ୍ଷୀ ରଖାଯାଇଛି । ଶହଶହ ବର୍ଷ ବ୍ୟାପୀ ପରାଧୀନ ଅବସ୍ଥାରେ ଭାରତୀୟ ଯୁବ ଚେତନା ଯେଉଁପରି ପରମୁଖାପେକ୍ଷୀ ହୋଇଗଲା, ସ୍ୱାଧୀନୋତ୍ତର ଯୁଗରେ ସେଇ ଅବସ୍ଥାର କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇ ପାରିଲାନାହିଁ । ଚୀନ, ଜାପାନ, ଇଣ୍ଡୋନେସିଆ ଭାରତୀୟ ରାଷ୍ଟ୍ରର ପରିମଣ୍ଡଳକରଣ ଆକ୍ରମଣକାରୀ- ହିମାଚଳ ବିପୁଳ ଯୁବଶକ୍ତିକୁ ଅକୁଂଠିତ ନେତୃତ୍ୱ ଦେଇ ତାରୁଣ୍ୟ ପ୍ରତିଭାର ସମ୍ପୂର୍ଣ୍ଣ ବିନିଯୋଗ କରିବାକୁ ଅକ୍ଷମ, ଅସମର୍ଥ ଏବଂଭୟଭୀତ । ଭାରତର ଯୁବଶକ୍ତି ଚୀନ୍‌ଦେଶ ବା ସରମୋଜା ଦେଶ— କାହାରିପରି ଜାତୀୟ ନେତୃତ୍ୱ ଉପରେ ନିର୍ଭରଶୀଳ ଏବଂ ଆସ୍ଥାବାନ ହୋଇ ପାରୁନାହାଂତି । ସ୍ୱାଧୀନୋତ୍ତର ଭାରତର ସେ କୌଣସି ନେତୃତ୍ୱ ଯୁବଜନର ଅକୁଂଠ ଶ୍ରଦ୍ଧାଭାଜନ ହେବାକୁ ଅକ୍ଷମ ।

ଭାରତୀୟ ରାଷ୍ଟ୍ର ଉପରେ ଆତ୍ମବଳ ପରୀକ୍ଷାଲାଗି ଆସିଥିବା ତିନି ତିନିଟି ଯୁଦ୍ଧ ବିପତ୍ତି ଏ ଦେଶର ତାରୁଣ୍ୟ ପ୍ରତିଭାକୁ ରାଷ୍ଟ୍ରୀୟ ନେତୃତ୍ୱ ଉପରେ ଆସ୍ଥାବାନ ହେବାର ଯେଉଁ ସୁଯୋଗ ଆଣି ଦେଇଥିଲା, ସେଗୁଡ଼ିକର ସ୍ଥାୟୀ ଅବଲଂବନ କିଛି ରହି ପାରିଲା ନାହିଁ । ଇତିହାସର କ୍ଷୁଦ୍ରତମ ନାଟକୀୟ ଘଟଣା ଭିତରେ ସେଇସବୁ କ୍ଷଣିକ ଉନ୍ମାଦନା ସୀମାବଦ୍ଧ ହୋଇଗଲା । ଆକୁମାରୀ ହିମାଚଳ, ବିପୁଳ ଭାରତୀୟ ଯୁବ ଶକ୍ତିର ବିଶ୍ୱାସ ଓ ଶ୍ରଦ୍ଧାଭାଜନ ହେବାଲାଗି ରାଷ୍ଟ୍ରୀୟ ନେତୃତ୍ୱ କେବଳ ଗୋଟିଏ ଗୋଟିଏ ଆକସ୍ମିକ ସୁଯୋଗକୁ ଅପେକ୍ଷା କରି ରହିଗଲେ । ଦେଶବାସୀ ଓ ରାଷ୍ଟ୍ରୀୟ ସତ୍ତା ମଧ୍ୟରେ ନାଟକୀୟ ମିଳନ ଅପେକ୍ଷା ବିଚ୍ଛେଦାଂତକ ଦୃଶ୍ୟ ଗୁଡ଼ିକ ଇତିହାସରେ ଦୀର୍ଘ ସ୍ଥାୟୀ ହୋଇ ରହିଗଲା ।

ସ୍ୱାଧୀନୋତ୍ତର ଭାରତରେ ଗୋଟିଏ ମାତ୍ର ଯୁବ ଆଂଦୋଳନ ବାସ୍ତବ ଅର୍ଥରେ ସଫଳ ହୋଇନାହିଁ । ଏହାର କାରଣ ହେଉଛି, ଏ ଦେଶରେ ସ୍ୱାଧୀ- ନୋତ୍ତର ନେତୃତ୍ୱ ଗୁଡ଼ିକ କେହି ପୂର୍ଣ୍ଣାଂଗପ୍ରାପ୍ତ ବା ସଫଳ ନୁହଁାଂତି । ଅପୂର୍ଣ୍ଣାଂଗ ଅସଫଳ, ଅସମର୍ଥ, ଅସ୍ୱାଭାବିକ, ଅସଂଲଗ୍ନ ଏବଂ ଅସବଂଧ ନେତୃତ୍ୱର ଆଂଦୋଳନ କଦାପି ସଫଳ ହୁଏନାହିଁ । ବହୁ ସଂଖ୍ୟକ ବିଫଳ ଓ ବିକଳାଂଗ ନେତୃତ୍ୱ ମଧ୍ୟରେ ଆପାତ ସଫଳ ଦୃଷ୍ଟାଂତ ଭାବେ ଯାହା କିଛି ପ୍ରକଟିତ ହୋଇଛି, ସେସବୁ କ୍ଷଣସ୍ଥାୟୀ । କାରଣ ସେଭଳି ଆପାତ ସଫଳ ନେତୃତ୍ୱ ଭିତରେ ଅଂତର୍ନିହିତ ଦୁର୍ବଳତା ଖୁବ୍ ସାଂଘାତିକ । ଚୀନ୍ ଦେଶପରି ଭାରତରେ ସ୍ୱାଧୀନୋତ୍ତର ଯୁଗର ନବ ନିର୍ମାଣ ଏବଂ ପୁନର୍ଗଠନରେ ଯୁବଶକ୍ତିକୁ ନେତୃତ୍ୱ ମିଳିନାହିଁ କିଂବା ଏ ଦେଶର ସଗ୍ରାମୀ

ଆଂଦୋଳନଂ ଗୁଡ଼ିକ ଚନ୍ ବା ଭିଏତ୍ନାମ ଦେଶପରି ଚରିତ୍ର ପ୍ରଧାନ ଏବଂ ଶୃଂଙ୍ଖଳିତ ନୁହଂତି । ଭାରତୀୟ ରାଜନୀତିର ଆଧୁନିକ ଇତିହାସ କେବଳ ଆକସ୍ମିକ ସୁଯୋଗର ପ୍ରତ୍ୟାଶୀ । ଏ ଦେଶରେ ସାଂପ୍ରତିକ ଇତିହାସର ଲକ୍ଷଣ ଓ ଉପଲକ୍ଷଣ ଗୁଡ଼ିକ ଦେଖିଲେ ଦୀର୍ଘସ୍ଥାୟୀ ନେତୃତ୍ୱର ଯୋଗ୍ୟତା ବା ସମ୍ଭାବନାର ଆଭାସ ସୁଦ୍ଧା ମିଳୁନାହିଁ ।

ଅନେକ ଯୁବ ଆଂଦୋଳନରେ ସଫଳତା ଏବଂ ବିଫଳତାର କାରଣ ସମ୍ପର୍କରେ ହିଂସା ଓ ଅହିଂସାର ଆଲୋଚନା କରଂତି । ଯେଉଁମାନେ ଅହିଂସା କଥା କହଂତି, ସେମାନେ ଖୁବ୍ ଗ୍ରଂଥକୀଟ ହୋଇପାରଂତି, କିଂତୁ ସେମାନଂକର ଆଧୁନିକ ଯୁଗର ଯୁବ ଆଂଦୋଳନକୁ ନେତୃତ୍ୱ ଦେବାର ଯୋଗ୍ୟତା ଏବଂ ମର୍ଯ୍ୟାଦା ସୁଦ୍ଧା ନାହିଁ । ଯେଉଁମାନେ ହିଂସାର ଭ୍ରାଂତ ବିଳାସ ମଧ୍ୟରେ ଯୁବଶକ୍ତିର ଆଂଦୋଳନକୁ ଅଗ୍ରଗାମୀ କରୁଚଂତି, ସେମାନେ ଗୋଟିଏ ଦିଗରେ ଆଂତର୍ଜାତିକ ପରିବେଶ ମଧ୍ୟରେ ଭାରତୀୟ ରାଷ୍ଟ୍ର ଯନ୍ତ୍ରର ଶକ୍ତି ସାମର୍ଥ୍ୟ, ବୈଜ୍ଞାନିକ ପ୍ରଗତି, ମାନବିକ ସଭ୍ୟତାର ବିକାଶ ଏବଂ ଅନ୍ୟ ଦିଗରେ ଭାରତର ଆଭ୍ୟଂତରୀଣ ସାମାଜିକ ଓ ପାରିବାରିକ ସ୍ଥିତି, ଅବସ୍ଥିତି, ଯୁବଶକ୍ତିର ସାମର୍ଥ୍ୟ, ଶକ୍ତି ସଂଗଠନ, ଚରିତ୍ର, ଆଚରଣ, ମନୋବୃତ୍ତି, ସଂସ୍କାର ଓ କୁସଂସ୍କାର ଅନୁଧ୍ୟାନ କରିବା ଉଚିତ । କାରଣ ଆଧୁନିକ କାଳରେ ହିଂସାକୁ ଗଣ ଆଂଦୋଳନର ମାଧ୍ୟମ କରିବା ସବୁଠାରୁ ବଳି କଠିନ ବ୍ୟାପାର ।

ଏ ଦେଶରେ ସାଂପ୍ରତିକ କାଳରେ ହିଂସା ଓ ଅହିଂସା ପ୍ରଣାଳୀରେ ଯୁବସମାଜକୁ ସଫଳ ନେତୃତ୍ୱ ଦେଇଭଳି କୌଣସି ମହାନ ପୁରୁଷ ଜନ୍ମ ହୋଇ ନାହାଂତି । ତେଣୁ ଇତିହାସର ଏକ ଶୂନ୍ୟ ବିଂଦୁରେ ଭାରତରେ ନୂତନ, ଅତ୍ୟାଧୁନିକ, ଅର୍ବାଚୀନ, ଯୁବସମାଜ ଇତିହାସର ଧାରା ପ୍ରବାହ ଭିତରେ ମହାଭାରତୀୟ ଜାତୀୟ ଚେତନାକୁ ଆଖି ଆଗରେ ରଖି ତାରୁଣ୍ୟ ପ୍ରତିଭାର ସୃଜନକାରୀ ଶକ୍ତିର ବିକାଶ ଏବଂ ବିନିଯୋଗ ପାଇଁ ସଫଳ ଯୁବ ଆଂଦୋଳନରେ ଅଗ୍ରସର ହେବା ଉଚିତ । ସେ ଆଂଦୋଳନର ପ୍ରଣାଳୀ ହିଂସାହେବ, କି ଅହିଂସ ହେବ, ତାହା ଗଣ ଆଂଦୋଳନର ନୂତନ ଧାରା ପ୍ରବାହରେ ଯେଉଁଦିନ ଆଂଦୋଳନକାରୀମାନଂକର ନିଜ ବସ୍ତୁବାଦୀ ଅଭିଜ୍ଞତାର ଭିତ୍ତିରେ ସ୍ଥିରୀକୃତ ହୋଇଯିବ, ସେଇଦିନ ସେଇଠାରେ ହିଁ ଗୋଟିଏ ନୂତନ ନେତୃତ୍ୱ କେନ୍ଦ୍ରଲାଭ କରି ଭାରତରେ ପୁରାତନ ସମାଜ ଓଲଟପାଲଟ ହୋଇଯିବ !

●



## ॥ ବ୍ୟକ୍ତି ଭୋଗ୍ୟ କଳା ବନାମ ସମାଜ ଭୋଗ୍ୟ କଳା ॥

ନିଜର ଶୟନ କକ୍ଷରେ କବାଟ ଦେହରେ ଲାଗିଥିବା ନଟ୍‌-ବୋଲ୍‌ଟ (knot-bolt) କୁ ଜଣେ ଅତ୍ୟାଧୁନିକ ଲେଖକ ଥରେ 'ସେକ୍‌ସ ସିଂବଲ' ରୂପେ ବ୍ୟବହାର କରିଥିଲେ । ସେ ନିଜର ଲେଖାରେ ସେକ୍‌ସର କେତେଗୁଡ଼ିଏ ପ୍ରତୀକ ଖୋଜିଲାବେଳେ ନଟ୍‌-ବୋଲ୍‌ଟ କଥା ମଧ୍ୟ ଲେଖିଛନ୍ତି । ବମ୍ବେରୁ ପ୍ରକାଶିତ ଗୋଟିଏ ପ୍ରଖ୍ୟାତ ଇଂରେଜୀ ପତ୍ରିକାର ସମ୍ପାଦକଙ୍କ ନାମରେ ଏଇ କିଛିଦିନ ତଳେ ପ୍ରେସ କାଉନ୍‌ସିଲ ପାଖରେ ଅଭିଯୋଗ ହୋଇଥିଲା ଯେ, ସେ ମହାଶୟ ନିଜ ପତ୍ରିକାରେ କାମ ଉଦ୍ରେକକାରୀ ନଗ୍ନ ଛବି ଛାପୁଛନ୍ତି ।

ସମ୍ପାଦକ ମହାଶୟ ନିଜ ପତ୍ରିକାରେ ବାହାରିଥିବା ବିଜ୍ଞାପନ ପୋଷାକ ପରିହିତା ଉଲଗ୍ନ ନାରୀ ଛବି ସମ୍ପର୍କରେ ପାଠକମାନଙ୍କ ପାଖରେ କୈଫିୟତ ବାଢ଼ିଥିଲେ । ସେହି କୈଫିୟତ୍ରେ ଖଜୁରାହୋ ମନ୍ଦିରରେ ପ୍ରସ୍ତର ନିର୍ମିତ ଉଲଗ୍ନା ଏବଂ ଅର୍ଦ୍ଧନଗ୍ନା ନାରୀ ମୂର୍ତ୍ତିଗୁଡ଼ିକର ଆଲୋକ ଚିତ୍ର ଛପାଯାଇଛି ।

ସେକ୍ସ କିପରି ଉଦ୍ରେକ ହୁଏ, ସେ ସମ୍ପର୍କରେ ଜଣେ ତରଳମତି ତରୁଣ ଲେଖକଙ୍କର ଦୃଷ୍ଟିକୋଣ ଏବଂ ଭାରତର ଜଣେ ପ୍ରତିଷ୍ଠିତଯଶା ବୟସ୍କ ସମ୍ପାଦକଙ୍କ ଦୃଷ୍ଟିକୋଣ ମଧ୍ୟରେ କିଛି ପାର୍ଥକ୍ୟ ଦେଖାଗଲା ନାହିଁ । ଘର କବାଟରେ ନଟ୍-ବୋଲ୍ଟର ସଙ୍ଗମ ଦେଖି ଯେଉଁ କବି ବା ଲେଖକ କାମାତୁର ହୁଅନ୍ତି, ସେ ଆଜିର ଅତ୍ୟାଧୁନିକ ସମାଜରେ ମଧ୍ୟ ବହୁସଂଖ୍ୟକ ସର୍ବସାଧାରଣ ନୁହନ୍ତି । କୌଣସି କୌଣସି କ୍ଷେତ୍ରରେ ବୟସ, ବ୍ୟକ୍ତିଗତ ଆଚରଣ ତଥା ମୂଲ୍ୟବୋଧ ଏବଂ ଅସାମଞ୍ଜସ୍ୟ ସାମାଜିକ ପରିବେଶ ମଧ୍ୟରେ କାହାରି କାହାରି ପାଖରେ ଏପରି ଉଦ୍‌ଭ୍ରାନ୍ତ ଚିତ୍ତବିକାର ସୃଷ୍ଟି ହେବା ଅସମ୍ଭବ ନୁହେଁ ।

ପ୍ରାଚୀନ ମନ୍ଦିର ଗାତ୍ରରେ ପ୍ରସ୍ତର ନିର୍ମିତ ଉଲଗ୍ନ ନାରୀମୂର୍ତ୍ତି ଦେଖି ସଚରାଚର ସାଧାରଣ ମଣିଷ ମନରେ କାମ ବିକାର ସୃଷ୍ଟିହେବା ସମ୍ଭବପର ନୁହେଁ । ତାହା ଯଦି ହୋଇଥାନ୍ତା, ଭାରତର ଇତିହାସ ଏବଂ ଭାରତୀୟ ସମାଜର ଗତାନୁଗତିକ ମୂଲ୍ୟବୋଧ ମଧ୍ୟ ଭିନ୍ନ ଶିଖରେ ବଦଳି ଯାଆନ୍ତାଣି । ମନ୍ଦିର ଗାତ୍ରରେ ଖୋଦିତ ଉଲଗ୍ନ ନାରୀମୂର୍ତ୍ତି ଯଦି ପୁରୁଷ ବା ନାରୀ ମନରେ କାମ ଉଦ୍ରେକ କରିବା ନିମନ୍ତେ ଅଭିପ୍ରେତ ବୋଲି ଧରିନିଆଯାଏ, ତାହା ହେଲେ ବି କେତେକ ସୀମିତ ପରିବେଶରେ ସୀମିତ ଶ୍ରେଣୀ ମାନଙ୍କର ତାହା ସମ୍ଭବପର ହୋଇପାରେ ।

ହଜାର ହଜାର ବର୍ଷ ତଳେ ସୃଷ୍ଟି ହୋଇଥିବା ମନ୍ଦିରର ଭିତ୍ତିଚିତ୍ର ସାମନ୍ତବାଦୀ ରାଜପୁରୁଷଙ୍କର ମନୋରଞ୍ଜନ ଉଦ୍ଦେଶ୍ୟରେ ଅଙ୍କିତ ହୋଇ-ଥିଲା । ସାମନ୍ତବାଦୀ ଯୁଗରେ କାମ ଉଦ୍ରେକକାରୀ ବିଳାସପୂର୍ଣ୍ଣ ବିଭବ ଏବଂ ଭୋଗପ୍ରାଚୁର୍ଯ୍ୟ ଯେଉଁମାନଙ୍କପାଇଁ ଉତ୍ସର୍ଗିତ, ସେମାନଙ୍କ ମଧ୍ୟରେ ସାଧାରଣ ମଣିଷର ଚିହ୍ନବର୍ଣ୍ଣ ବି ନଥିଲା । ସେହି କାରଣରୁ ମନ୍ଦିର ବା ନାଟ୍ୟଶାଳାର ଭିତ୍ତିଚିତ୍ରକୁ ସାଧାରଣ ମଣିଷ କେବେହେଲେ ନିଜର ମାନସିକ ଓ ଦୈହିକ ଉପଭୋଗ୍ୟ ସାମଗ୍ରୀଭାବେ ଗ୍ରହଣ କରିବା ଇତିହାସରୁ ପ୍ରମାଣ ମିଳେନାହିଁ । କିନ୍ତୁ ଏହା ବୋଲି ଯେ ସୃଷ୍ଟି ଧର୍ମର ଆଦର୍ଶ ଏବଂ ସାମାଜିକ ଆବଶ୍ୟକତା

ଦୃଷ୍ଟିରୁ ଅଧୁନିକକାଳରେ ମଧ୍ୟ ସେଗୁଡ଼ିକର ନବ ମୂଲ୍ୟାୟନକୁ ଉପେକ୍ଷା କରି ଦିଆଯିବ, ଏପରି ଭାବିବା ଅବାଂଚ୍ଛିତ ବିଷୟ ।

ଯେଉଁ ଯୁଗରେ କୃଷ୍ଣ ବାସୁଦେବ ଷୋଳ ସହସ୍ର ଗୋପାଙ୍ଗନାଙ୍କୁ ନଦୀକୂ ଉଠାଇ ଆଣି ଯମୁନା ଜଳରେ ରାସକ୍ରୀଡ଼ା କରୁଥିଲେ, ସେ ଯୁଗ ଆଜି ନାହିଁ । କୃଷ୍ଣଙ୍କ ସହିତରେ ଷୋଳହଜାର ଯୁବତୀ ନାରୀ ଉଲଗ୍ନ ବେଶରେ ଜଳକ୍ରୀଡ଼ା କରୁଥିବା ଅଶ୍ଳୀଳ ଅବାଂଛିତ ଦୃଶ୍ୟାବଳୀର କାଳ୍ପନିକ ବା ବାସ୍ତବ କାହାଣୀ ଏକଦା ପୁରାଣ ସାହିତ୍ୟରେ ବର୍ଣ୍ଣିତ ହୋଇଥିଲା । ଇତିହାସର ଧାରାପ୍ରବାହରେ ତାହାହିଁ ଥିଲା ଏ ଦେଶର ଜନସାଧାରଣଙ୍କର ବହୁ ଯୁଗ ବ୍ୟାପୀ ଉପଭୋଗ୍ୟ ସାହିତ୍ୟ । ସେଇ ସାହିତ୍ୟକୁ ଏ ଦେଶର 'ଗଣସାହିତ୍ୟ' କହିଲେ ବି ଅତ୍ୟୁକ୍ତି ହେବନାହିଁ । କିନ୍ତୁ ସେଇ ସାହିତ୍ୟ ଦ୍ୱାରା ବା କେବେ କେଉଁଠି ସାଧାରଣ ସ୍ତରରେ ସମାଜ ଭିତରେ ଜନମାନସର ବ୍ୟାପକ ସ୍ଖଳନ ଘଟିଥିବା ପ୍ରମାଣିତ ହୁଏନାହିଁ । କିନ୍ତୁ ଆଧୁନିକ କାଳରେ ନଟ୍-ବୋଲ୍ଟ ସଙ୍ଗମକୁ ରୂପକଳ୍ପ କରି ଯେଉଁ କାମ ଉଦ୍ରେକକାରୀ ସାହିତ୍ୟ ଏବଂ ବିକିନି ପୋଷାକର ଅର୍ଦ୍ଧନଗ୍ନା ଏକକ ନାରୀର ପ୍ରତିଛବି ମାଧ୍ୟମରେ ଯେଉଁ ସୌନ୍ଦର୍ଯ୍ୟବିଳାସୀ ବ୍ୟକ୍ତିକୈନ୍ଦ୍ରିକ ଚିତ୍ରକଳା ପ୍ରସ୍ତୁତ ହେଉଛି, ସେସବୁ କ'ଣ ସେଇପ୍ରକାର ମଧ୍ୟଯୁଗୀୟ କଳା ସାହିତ୍ୟ କି ?

ଘରର କବାଟରେ ନଟ୍-ବୋଲ୍ଟର ସଙ୍ଗମ କାରିଗରୀ କାର୍ଯ୍ୟ । ଏଇ କାର୍ଯ୍ୟରେ କଳା ବା କଳ୍ପନା ମଧ୍ୟ ନାହିଁ । ଏହାକୁ ଯେଉଁ କାରିଗର ଗଢ଼ନ୍ତି, ସେମାନଙ୍କ ଜୀବନରେ ରୋମାନ୍ସ ବା ଭାବପ୍ରବଣତାର ଅବକାଶ ଖୁବ୍ ନଗଣ୍ୟ କହିଲେ ସତ୍ୟଇ ଅପଲାପ ହେବନାହିଁ । ଏପରି ଶୁଷ୍କ, ନିର୍ଜୀବ ଏବଂ ବସ୍ତୁତାନ୍ତ୍ରିକ ପରିବେଶ ମଧ୍ୟରେ କାହାରି ମନରେ କଦାପି କାମ ଉଦ୍ରେକ ନହେବାର କଥା । ତାହା ହୋଇଥିଲେ, ବଗିଚାର ଫୁଲରେ ଭ୍ରମର ବସିବା ମାତ୍ରେ ସଚରାଚର ମନିଷ ମନରେ ଦୈହିକ କାମ-ବିକାର ସୃଷ୍ଟି ହେଉଥାଆନ୍ତା ।

କଳା ଦୃଷ୍ଟିରୁ ମଧ୍ୟ ମନ୍ଦିର ଗାତ୍ରରେ ଖୋଦିତ ଉଲଗ୍ନ ନାରୀ ଚିତ୍ରର ମହାନ ଇତିହାସ ରହିଛି । ସେ ଇତିହାସ ବଡ଼ ସଂଘର୍ଷଣାତ୍ମକ । ସେଇ ଇତିହାସକୁ ମାନବିକ ସମ୍ବେଦନଶୀଳତାର ସହିତ ଯେଉଁମାନେ ଉଦ୍‌ଘାଟନ କରିବେ, ସେମାନେ ବୁଝି ପାରିବେଯେ — ସଂସାରରେ କୌଣସି ଦେହଧାରୀ ମଣିଷ କେବେହେଲେ ନିଜର ବୈକ୍ତିକ ବା ଆତ୍ମକୈନ୍ଦ୍ରିକ ଦେହ ବାସନାରେ ଜର୍ଜରିତ ହୋଇଥିଲେ, ଏପରି ସଫଳ ଅବଦାନ ସମାଜ ହାତରେ ଟେକିଦେଇ ପାରି ନଥାନ୍ତା ।

ସମାଜତାତ୍ତ୍ୱିକ ଦୃଷ୍ଟିରୁ ବିଗ୍ଗର କଲେ ଜଣାଯାଏ ଯେ, ହିଂନ୍ଦୁ ଧର୍ମରେ ପ୍ରାଚୀନ ମଂନ୍ଦିର ମାନଂକରେ ଉଲଗ୍ନ ନାରୀ ମୂର୍ତ୍ତିର ଭିତ୍ତିଚିତ୍ର ସହିତ ଲିଂଗ ପୂଜାର ମଧ୍ୟ ପ୍ରଚଳନ ରହିଛି । ଅନେକ ଗବେଷକ ପଂଡ଼ିତ ସେ ସବୁକୁ ତଂତ୍ରଯୁଗୀୟ ଚିତ୍ରକଳା ବୋଲି ପ୍ରମାଣିତ କରିଛଂତି । କିଂତୁ ତଂତ୍ରଯୁଗୀୟ ଚିତ୍ରକଳା ମଧ୍ୟ ସମାଜର ସ୍ଖଳନଲାଗି ଉଦ୍ଦିଷ୍ଟ ନଥିଲା ।

ଯେ କୌଣସି ଯୁଗର ମୂର୍ତ୍ତିକଳା ହେଉନା କାହିଁକି, ଯେଉଁଥିରେ ଶିଳ୍ପୀ ମନର ନିଖୁଣ ସୌଂଦର୍ଯ୍ୟବୋଧ ଏବଂ ନିପୁଣ ରୂପକଳ୍ପକୁ ଜଡ଼ ପ୍ରସ୍ତର ଗାତ୍ରରେ ଯୁଗ ଯୁଗ ବ୍ୟାପୀ ଅମର କରିବାଲାଗି ଜଣେ ଜଣେ ଏକକ କାଳଜୟୀ ମଣିଷଂକ ନିରବଚ୍ଛିନ୍ନ ସାଧନାକୁ ସମ୍ମାନ ଦେବାକୁହିଁ ପଡ଼ିବ । ଆଧୁନିକ ସଭ୍ୟକଗତଠାରୁ ମଧ୍ୟ-କାଳୀନ ସାମଂତବାଦୀ ଯୁଗର ଉପେକ୍ଷିତ ଅସମ୍ମାନିତ ଶିଳ୍ପୀ, ନିଜ ଆଦର୍ଶ ବଦଳରେ ଆଉ କିଛିହେଲେ ସ୍ୱୀକୃତି ଦାବୀ କରେନାହିଁ । ସେଇପରି କବାଟ ଓ ଝରକା ଦେହରେ ଖଂଜା ନଟ୍-ବୋଲ୍ଟ ତିଆରି କରିଥିବା କାରିଗରର ଘର୍ମାକ୍ତ ଶ୍ରମ-କ୍ଳାଂତକୁ ଉପହାସ କଲାଭଳି ଆଉରି କିଛି ନୂଆ ବିକଳ୍ପ ସ୍ୱୀକୃତି ଯାଚିବା ଅନୁଚିତ କର୍ମ । ସାହିତ୍ୟ ଓ କଳା ରାଜ୍ୟରେ ଏପରି ଅବାଂଛିତ ଆତ୍ମଶ୍ଳାଘା ଯେଉଁମାନେ ଦେଖାଂନ୍ତି, ସେମାନେ ଆଉ କିଛି ନହେଲେ ବି ହିତଭାବଂ ଶିଳ୍ପୀ-କୁଳକୁ ଶ୍ରମର ମର୍ଯ୍ୟାଦା ବା ମୂଲ୍ୟ ଦେବାକୁ ଆଜିଯାଏ ଶିଖି ପାରିନାହାଂନ୍ତି !

ମଂନ୍ଦିର ଗାତ୍ରରେ ଖୋଦିତ ଉଲଗ୍ନ ନାରୀଚିତ୍ର ସମାଜର ସବୁ ଶ୍ରେଣୀର ଲୋକଂକଲାଗି ସବୁ ଅବସ୍ଥାରେ କାମ ଉଦ୍ରେକକାରୀ ଘଟଣା ହେବା ସ୍ୱାଭାବିକ ନୁହେଁ । ସୀମିତ ଅବସରରେ ଏହାର ବ୍ୟତିକ୍ରମ ସମ୍ଭବ । ସାହିତ୍ୟ ବା କଳା ରାଜ୍ୟରେ ସାମଂତବାଦୀ ଚିନ୍ତାଚିତ୍ର ଅନୁସରଣ କରି ଯେଉଁମାନେ ଏ ଦେଶର ନବ୍ୟ-ପୁଂଜିବାଦୀ ସଭ୍ୟତାର ଆବାହନ କରୁଛଂତି, ହୁଏତ ସେଇପରି କେତେକ ଅସାଧାରଣ ମୁଷ୍ଟିମେୟ ବୁଦ୍ଧିଜୀବୀଂକଲାଗି ଖଜୁରାହୋ ଏବଂ କୋଣାର୍କ ମଂନ୍ଦିରର ନିର୍ଜୀବ ଭିତ୍ତିଚିତ୍ରରେ ମଧ୍ୟ କାମବାସନାର ପ୍ରାଚୁର୍ଯ୍ୟ ଭରପୁର ରହିଛି !

●

## ॥ ଲେଖକଙ୍କର ଅନ୍ୟାନ୍ୟ ପ୍ରକାଶିତ ବହି ॥

୧ । ସଂଘର୍ଷ (କବିତା) ୧୯୪୦ (ଅପ୍ରାପ୍ତ)

୨ । ରକ୍ତ ମହାଂଶ (କବିତା) ୧୯୪୬ (ଅପ୍ରାପ୍ତ)

୩ । ମାଓ ସେ-ତୁଂ (ଜୀବନ-ଇତିହାସ) ୧୯୫୨ ··· (ଅପ୍ରାପ୍ତ)

୪ । ଚରିତ୍ରହୀନା (ଅନୁଦିତ ଉପନ୍ୟାସ
ମୂଳ ରଚନା : ନଥନିୟେଲ ହଥର୍ନ) (ଅପ୍ରାପ୍ତ)

୫ । ବିରଳ ମୃତ୍ତିକା (କବିତା) ୧୯୭୪ ଟ ୭-୦୦

୬ । ଧାପାଳୀ ସଂଘ (ଉପନ୍ୟାସ) ୧୯୭୪ ଦ୍ୱିତୀୟ ସଂସ୍କରଣ ଯନ୍ତ୍ରସ୍ଥ

୭ । ନବ ବଟିକା (ଗଳ୍ପ ସଂକଳନ) ଯନ୍ତ୍ରସ୍ଥ